# ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କରେ



# ଜଣେ ମହାପୁରୁଷଙ୍କ

## ଜନ୍ମ ଓ ମୃତ୍ୟୁ ସମ୍ପର୍କରେ

( ମଣ୍ଡୂକ ଉପାଖ୍ୟାନମ୍ )

ରମେଶ ପାଣିଗ୍ରାହୀ



ବିଜୟ ବୁକ୍ ଷ୍ଟୋର
ବ୍ରହ୍ମପୁର

ଅଧ୍ୟାପକ ରମେଶପ୍ରସାଦ ପାଣିଗ୍ରାହୀ
ବିକ୍ରମଦେବ ମହାବିଦ୍ୟାଳୟ, ଜୟପୁର



ପ୍ରକାଶକ :
ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର
ବିଜୟ ବୁକ୍ ଷ୍ଟୋର
ବ୍ରହ୍ମପୁର (ଗଞ୍ଜାମ)

ମୁଦ୍ରଣ :
ସନ୍ତୋଷ ପ୍ରିଣ୍ଟର୍ସ
ବ୍ରହ୍ମପୁର—୯

ମୂଲ୍ୟ—ଦଶ ଟଙ୍କା ମାତ୍ର

ପ୍ରଥମ ପ୍ରକାଶ—ନବବର୍ଷ, ୧୯୭୩
ଦ୍ୱିତୀୟ ପ୍ରକାଶ—ଦଶହରା, ୧୯୮୭

JANE MAHAPURUSHANKA JANMA O MRUTYU
SAMPARKARE
OR
MANDUKA UPAKHYANAM

**Sri Rameshprasad Panigrahy**
Lecturer
Bikramdev College, Jeypore



Publisher :
Sri Bhaskar Chandra Patra
**Bijoy Book Store**
Berhampur (Ganjam)

**Price Rupees : Ten only**

ଗଞ୍ଜାମ କଳା ପରିଷଦ, ବ୍ରହ୍ମପୁରଙ୍କ ଦ୍ୱାରା
ପ୍ରଥମ ଥର ପାଇଁ ଅଭିନୀତ
ତା ୨-୧୨-୭୨ ଓ ୩-୧୨-୭୨

ମୁଖ୍ୟ ଅତିଥି : ଶ୍ରୀ ବିନାୟକ ଆଚାର୍ଯ୍ୟ
ଶିକ୍ଷା ଓ ସାଂସ୍କୃତିକ ମନ୍ତ୍ରୀ, ଓଡ଼ିଶା

ଭୂମିକାରେ :

ଅ : କୃଷ୍ଣମୋହନ : ଡା: ସୁରେନ୍ଦ୍ର ପ୍ରସାଦ ଦାସ
ଚନ୍ଦ୍ରଶେଖର : ବାଳକୃଷ୍ଣ ଦାସ
ବୀରଭଦ୍ର : ଭାସ୍କରଚନ୍ଦ୍ର ପାଣି
ମାଧବୀ : କୁମାରୀ ଆଲ୍ପନା ଘୋଷ

ନିର୍ଦ୍ଦେଶନା ଡା: ସୁରେନ୍ଦ୍ରପ୍ରସାଦ ଦାସ

ଆଲୋକ କେଦାର ଆପ୍ତା ଓ ଡା: ଜଗନ୍ମୋହନ

ମଂଚ କେଦାର ଆପ୍ତା

ସଂଗୀତ ଡା: ବାଦଲ ମହାନ୍ତି
ବାଳକୃଷ୍ଣ ଦାସ
ବିଷ୍ଣୁ ପଣ୍ଡା
ଅଶୋକ ପାଢ଼ୀ
ଗୌରହରି ସାହୁ

ନୀରବ ଅଭିନୟ :

ଶଙ୍କର ଡା: ସନ୍ତୋଷ ମିଶ୍ର
କେଉଟ : ଶ୍ୟାମସୁନ୍ଦର ଶତପଥୀ

—୦—

ସୂଚନା !

# ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କରେ

ପୁରୁଷ ନିକଟରେ ମହାପୁରୁଷ ଗୋଟିଏ ଜୀବଂତ ଆକାଂକ୍ଷା, କିଂତୁ ଅନେକ ସମୟରେ ଏହି ଆକାଂକ୍ଷା ଏତେ ରହସ୍ୟଜନକ ହୋଇ ପଡ଼େ ଯେ କେବଳ ଏକ ମାତ୍ରାଧିକ୍ୟର ପାର୍ଥକ୍ୟ ବ୍ୟତୀତ ପୁରୁଷ ଓ ମହାପୁରୁଷ ମଧ୍ୟରେ କୌଣସି ପ୍ରଭେଦ ବାରି ହୁଏନି । ମନେହୁଏ ଯେମିତି ହୀନ ହେଉ ବା ମହାନ୍ ହେଉ ପୁରୁଷ ହିଁ ସବୁକିଛି । କିଂତୁ ନିର୍ଦ୍ଦିଷ୍ଟ କୌଣସି ବ୍ୟକ୍ତିଠାରେ ହୀନତା କିଂବା ମହାନତା ଆରୋପ କଲେ ସେହି ବ୍ୟକ୍ତି ଅନ୍ୟଠାରୁ ବାରି ହୋଇପଡ଼େ । ଅନ୍ୟଠାରୁ ଭିନ୍ନ କରି ତାହାକୁ ଚିହ୍ନି ହୁଏ । ଏହି ଆରୋପ ହିଁ ତା'ର ଚରିତ୍ରର ବିଶେଷତ୍ୱ ହୋଇପଡ଼େ ବ୍ୟତିକ୍ରମ ଭାବରେ ଓ ଏହି ବିଶେଷତ୍ୱ ବା ବ୍ୟତିକ୍ରମ ଜୀବନ ଦର୍ଶନଠାରୁ ଜୀବିକା ନିର୍ବାହର ବାସ୍ତବ ସ୍ଥିତି ପର୍ଯ୍ୟଂତ କଥିତ ବ୍ୟକ୍ତିର ସବୁକିଛିକୁ ରୂପାଂତରିତ କରେ ତାହାର ସବୁଠି ଏକ ସ୍ୱାତଂତ୍ର୍ୟ, ଏକ ଅଲଗା ଅସ୍ତିତ୍ୱ ଏବଂ ଏକ ସ୍ୱଭାବାଂତର ହୁଏ । ଫଳରେ ତାହାର କଥା ଓ କାର୍ଯ୍ୟ, ଚିଂତା ଓ ଧାରଣା, ଆଶା ଓ ଆକାଂକ୍ଷା, ମତ ଏବଂ ବାଦ ସବୁ କିଛି, ସାଧାରଣ ଦୃଷ୍ଟିରେ, ମନେହୁଏ କିଂଭୂତକିମାକାର ଓ ରହସ୍ୟ-ବିଜଡ଼ିତ; ସଂକ୍ଷେପରେ କହିଲେ—ଆବସାର୍ଡ ! ଶ୍ରୀ ପାଣିଗ୍ରାହୀଙ୍କ ନାଟକ ଏହିଭଳି ଜଣେ ମହାପୁରୁଷଙ୍କ ଜୀବନର ନାଟ୍ୟରୂପ ।

ମହାପୁରୁଷ ନିଶ୍ଚିତ ଭାବେ ଜଣେ ବ୍ୟକ୍ତି । ତାଂକର ଗୋଟିଏ ନାମ ଥାଏ ଏବଂ ଥାଏ କିଛି ଗୋଟିଏ ଐକାଂତିକ ପାଗଳାମି । କିଂତୁ ମଂଗଳ ଗ୍ରହରେ ବିକଳ୍ପ ପୃଥିବୀ ଗଢ଼ିବା ହେଉ ଅଥବା ଟେଷ୍ଟ-ଟ୍ୟୁବ୍ ଭିତରେ ମଣିଷ ତିଆରି କରିବା ହେଉ, କିଛି ଗୋଟାଏ

ଅଦ୍ଭୁତ ଉଦ୍ଦେଶ୍ୟ ତାଂକ ଜୀବନର ସବୁ କିଛି ହୋଇପଡ଼େ; ଏବଂ ସେଇଥିପାଇଁ ହାମଲକ୍ ପିଇବା, କ୍ରୁଶବିଦ୍ଧ ହେବା କିଂବା ଗୁଳିମାଡ଼ ଖାଇ ମରିବାର ଯଥେଷ୍ଟ ସମ୍ଭାବନା ସତ୍ତ୍ୱେ ସେମାନେ ତାହାଂକ ପାଗଳାମୀକୁ ଗଂଠିଧନ କରି ଧରିଂଛି । ପୃଥିବୀ ଜଳୁ ପୋଡ଼ୁ, ସମାଜ ରହୁ ନରହୁ, ମଣିଷ ରହୁ ନରହୁ ତାଂକର ସେଥିରେ କିଛି ଯାଏନା କି ଆସେନା । ତାଂକ ପାଇଁ କେବଳ ସେ ନିଜେ ଓ ତାଂକର ଆକାଂକ୍ଷା ଛଡ଼ା ଅନ୍ୟ ସବୁ କେବଳ ବାଧାବିଘ୍ନ ଓ ପ୍ରତିବଂଧକ; ଏପରିକି ନିଜ ସ୍ତ୍ରୀ ମଧ୍ୟ ।

ସେହିଭଳି ଜଣେ ମହାପୁରୁଷ ହେଉଛଂତି କୃଷ୍ଣମୋହନ । ତାଂକର ଗୋଟିଏ ଅଦ୍ଭୁତ ତଥ୍ୟ ! ବର୍ଷାର ପ୍ରଥମ ବାରିବିଂଦୁ ଯେତେବେଳେ ବେଂଗମୁଂଡ଼ରେ ପଡ଼େ ତାହା ମଣି ହୋଇଯାଏ, ଏବଂ ଦ୍ୱିତୀୟତଃ ସାପ ଯେତେବେଳେ ସେହି ବେଂଗକୁ ଗିଳିଦିଏ, ମଣିଟି ସାପର ଫଣା ଉପରେ ରହିଯାଏ ଏବଂ ବେଂଗଟି ପେଟ ଭିତରକୁ ଚାଲିଯାଏ । ସବୁଠାରୁ ଆଶ୍ଚର୍ଯ୍ୟ, କୃଷ୍ଣମୋହନଂକ ଏହି ତଥ୍ୟ କୌଣସି ବିଜ୍ଞାନ ପ୍ରତିଷ୍ଠିତ ସତ୍ୟ ଉପରେ ଆଧାରିତ ନହୋଇ ଲୋକକଥାର କୌଣସି ଆଖ୍ୟାୟିକାରୁ ସଂଗୃହୀତ ହେବାପରି ମନେହୁଏ । ତଥାପି ସାପ ଫଣାର ମଣି ଏବଂ ସାପ-ବେଂଗର ଅତିପରିଚିତ ସଂପର୍କ ପରିପ୍ରେକ୍ଷୀରେ ଏହି ତଥ୍ୟ ତାହାର ସମସ୍ତ ଉଦ୍ଭଟତା ସତ୍ତ୍ୱେ, ସ୍ୱାଭାବିକ ଭାବେ ଗୃହୀତ ହୋଇଯାଏ । ପ୍ରମାଣସାପେକ୍ଷ ଏହି ଅଯୌକ୍ତିକ ତଥ୍ୟକୁ ମହାପୁରୁଷ କୃଷ୍ଣମୋହନଂକ ହାସ୍ୟାସ୍ପଦ ଓ ଶ୍ଳେଷାତ୍ମକ ନିଷ୍ଠାପର ବାଜନଂବ ଭାବରେ ଚିଂତା କଲେ ତାଂକର ଜୀବନ ବେଖାପ ଓ ଅବ୍ୟବସ୍ଥିତ (Out of harmony) ମନେ ନହୋଇ ସ୍ୱାଭାବିକ ମନେହୁଏ ଯଦିଓ ତାଂକ ତଥ୍ୟ ପ୍ରକୃତ ପକ୍ଷେ (A violation of the rules of logic) ଅବାଂତର; ଯଥାର୍ଥ ହୀନ । ଅଥଚ ଏଠାରେ ଏହା ସ୍ମରଣ ରଖାଯାଇପାରେ ଯେ ପ୍ରତ୍ୟେକ ପ୍ରମାଣିତ ତଥ୍ୟ ପ୍ରମାଣିତ ହେବା ପୂର୍ବରୁ ସାଧାରଣତଃ ଉଦ୍ଭଟ, ମିଛ, ଅବାଂତର, ଅଯୌକ୍ତିକ ବୋଲି କଥିତ ହୁଏ । ଏଣୁ ସାମଗ୍ରିକ ଭାବେ ଉଦ୍ଭଟ ପରିଂପରାର ନାଟକ ଭିନ୍ନ ହେଲେ ବି

ମହାପୁରୁଷ କୃଷ୍ଣମୋହନଂକ ଜୀବନକୁ ନେଇ ଗଠିତ ରମେଶ ପାଣିଗ୍ରାହୀଂକ ନାଟକ ସ୍ୱାଭାବିକତାର ହିଁ ନାଟ୍ୟରୂପ । ତତ୍ତ୍ୱଧର୍ମୀ ହେଲେ ବି ଏହି ନାଟକର ବିଷୟବସ୍ତୁ ନିତାଂତ ଉଦ୍ଭଟ ।

ନାଟକ କାହାଣୀ ପ୍ରଧାନ, ସମସ୍ୟା ପ୍ରଧାନ, ପ୍ରଶ୍ନର ପ୍ରଧାନ କିଂବା ନାଟ୍ୟକାରଂକ ବ୍ୟକ୍ତିଗତ ଦୃଷ୍ଟିଭଂଗୀର ସାର୍ବଜନୀନ କାବ୍ୟିକ ରୂପ ହେବା ସଂଭବ । ଏଣୁ ରମେଶ ପାଣିଗ୍ରାହୀଂକ ଏହି ନାଟକ ପ୍ରଶ୍ନର ପ୍ରଧାନ ସିନା ନୁହେଁ, ଏହାର ଗୋଟିଏ ମନୋଜ୍ଞ କାହାଣୀ ରହିଛି । ଅନେକ ବାସ୍ତବ ସମସ୍ୟା ରହିଛି ଏବଂ ସବୁ ଥିବା ସତ୍ତ୍ୱେ ନାଟ୍ୟକାରଂକ ବ୍ୟକ୍ତିଗତ ଦର୍ଶନର କିଛି ନଥିବା ମନୋଭାବର ଦୃଷ୍ଟି ବି ଅଛି । ନିଜ ଅଦ୍ଭୁତ ତଥ୍ୟକୁ ନେଇ ନିଷ୍ଠାପର ଭାବେ ପାଂଚ ହଜାର ବେଂଗଂକୁ ହତ୍ୟା କରିଥିବା ଏହି ନାଟକୀୟ ମହାପୁରୁଷ କୃଷ୍ଣମୋହନ ତାଂକ ତଥ୍ୟ ସହ ଜନ୍ମ ନେଇଛଂତି । ତାଂକ ତଥ୍ୟର ଜୀବନ ସହ ସେ ଓତପ୍ରୋତ ଭାବେ ଜଡିତ । ସେ ଜଣେ ବେଂଗ ଗବେଷକ ଏବଂ ତାଂକର ଗବେଷଣା ବର୍ତ୍ତମାନର ନିତ୍ୟପରିବର୍ତ୍ତନଶୀଳ ଗବେଷଣା ପାଇଁ ଏକ ବିଦ୍ରୂପ ହେଲେ ବି ତାହା ଏକ ଗବେଷଣା ଏବଂ ସେଥିପାଇଁ ତାଂକର ଅତୁଳନୀୟ ନିଷ୍ଠା । ଯେ କୌଣସି ବୈଜ୍ଞାନିକଂକ ଜୀବନ ପରି ଅଲୌକିକ ନହେଲେ ବି ଅଯୌକ୍ତିକ ଭାବେ ଯୁକ୍ତିଯୁକ୍ତ ବା ସ୍ୱାଭାବିକ । ନାଟକ ଆରଂଭ ହେଲା ବେଳକୁ ସେ ଏଗାର ବର୍ଷର ଦାଂପତ୍ୟ ଜୀବନକୁ ଅତିକ୍ରାଂତ କରିସାରିଲେଣି । ପାଂଚ ହଜାର ବେଂଗ କାଟି ସାରିଲେଣି ଓ ଆହୁରି ଯେ କେତେ ନିଷ୍ପାପ ବେଂଗ ତାଂକ ତଥ୍ୟ ପ୍ରମାଣ ପାଇଁ ବଳି ପଡିବେ ତାହାର କଳନା ନାହିଁ । କେବଳ ସେତିକି ନୁହେଁ ଯେ କୌଣସି ବୈଜ୍ଞାନିକ ପରି ସେ ତାଂକ ଚତୁଃପାର୍ଶ୍ୱର ସମାଜଦ୍ୱାରା ପରିତ୍ୟକ୍ତ, ନିପୀଡିତ ଓ ଅଯଥା କୁତୂହଳର ଶରବ୍ୟ ହୋଇ ଅନେକ ବର୍ଷ ହେଲା ଏକ ନିର୍ବାସିତ ଜୀବନ (alienation) ଯାପନ କରୁଛଂତି । ଏଗାର ବର୍ଷର ଦାଂପତ୍ୟ ଜୀବନ ଭିତରେ ନିଜ ପତ୍ନୀଂକ କୋଳରେ ଛୁଆଟିଏ ଦେଇ ନପାରି ଥିବାରୁ 'ପିଙ୍ଗ୍ ପଙ୍ଗ୍' ଓ 'ନାଇଟ୍ କୁଇନ୍'ଙ୍କୁ

ଲୁଚେଇ ଲୁଚେଇ ଦାଂପତ୍ୟ ତାଲୁଥିବା ନିଜର ପତ୍ନୀ କୃଷ୍ଣମୋହନଂକୁ ଜଣେ ବ୍ୟର୍ଥ ସାଧକ ମନେକରି ତାଂକ ଉପରେ ଦୟାର୍ଦ୍ର କରୁଣା ଢାଳଂତି ଏବଂ କଶୋରୀ ବୟସର ଜଣେ ପରିଚିତଂକୁ ମନେ ପକାଇ ମହାପୁରୁଷଂକୁ ବିବାହ ବଜାରର ମୂଲ୍ୟହୀନ ପଣ୍ୟ କରଂତି । ମହାପୁରୁଷ କୃଷ୍ଣମୋହନ ନିଜ ସ୍ତ୍ରୀ ମାଧବୀଂକ ପାଇଁ ଏକ ବ୍ୟର୍ଥତାର ପୋଷ୍ଟର ଏବଂ ନିଜ ଗବେଷଣା ପାଇଁ ବେଂଗ ସଂଗ୍ରହ କରୁ କରୁ ସାହି ପଡ଼ିଶାର ଝିଅ ବୋହୂଂକ ପାଇଁ ସେ ଏକ ଆତଂକ । କାରଣ ବର୍ଷାରାତିର ନିସ୍ତବ୍ଧତାରେ କୌଣସି ଅଶରୀରୀ ପ୍ରେତାତ୍ମା ସେ ମୁଂଡରେ ଟୋପିଟିଏ ପିଂଧି ହାତରେ ଗୋଟିଏ ବେଂଗ ଧରା ଜାଲ ଧରି ଅର୍ଦ୍ଧଉଲଗ୍ନ ଭାବେ ପୋଖରୀ କଡ଼େ, ନାଳ ନର୍ଦ୍ଦମା ପାଖରେ ଏବଂ ଗୁକୁଂଡ଼ା ବଣରେ ବୁଲଂତି । ଘର ମାଲିକ ପାଇଁ ସେ ଜଣେ ମାରାତ୍ମକ ବ୍ୟକ୍ତି କାରଣ ସେ ନିୟମିତ ଭାବେ ଘରଭଡ଼ା ଦିଅଂତି ନାହିଁ ଏବଂ ଭଡ଼ା ମାଗିବା ପାଇଁ ପହଂଚିଲେ କୁତୁକୁତୁ କରଂତି । ଷାରଭଦ୍ରଂକ ପାଇଁ ସେ ଏକ ସନ୍ତ୍ରାସ; କାରଣ ସେ ଭଦ୍ର ବ୍ୟବହାର କଅଣ ତାହା ଜାଣଂତି ନାହିଁ । ଏହିଭଳି ମହାପୁରୁଷ କୃଷ୍ଣମୋହନ ସମସ୍ତଂକ ପାଇଁ ଏକ ଅବାଂତର ସ୍ଥିତି । କୃଷ୍ଣମୋହନଂକ ଏହି ବ୍ୟତିକ୍ରମ ଜୀବନ, ଏହି ଖାପଛଡ଼ା ଚଳଂତି ଏବଂ ଏହି ଅପରିଚିତ ଆଚୁର ବ୍ୟବହାର ତାହାଂକୁ ସାଧାରଣ ଜୀବନ ସ୍ରୋତରୁ ବିଚ୍ଛିନ୍ନ କରିଛି ଏବଂ ବିଚ୍ଛିନ୍ନ ଜୀବନରୁ ତାଂକ ପାଇଁ ସେମାନେ ଅପ୍ରାସଂଗିକ ହୋଇ ପଡ଼ିଛଂତି । ଏହି ହାସ୍ୟାସ୍ପଦ ଓ କରୁଣ ଚରିତ୍ରକୁ ନାଟକର ମୁଖ୍ୟନାୟକ କରି ଅବଶ୍ୟ ନାଟ୍ୟକାର ଅନ୍ୟ ଲନନଣ ଚରିତ୍ରଂକ ଅସ୍ତିତ୍ୱକୁ ନ୍ୟୂନ କରିନାହାଂନ୍ତି । ପୁରାତନ ନାଟ୍ୟ ପରଂପରାରେ ନାୟକ ଓ ଖଳନାୟକଂକ ଚରିତ୍ର ପ୍ରସ୍ଫୁଟନ ପାଇଁ ଅନ୍ୟ ଚରିତ୍ରମାନଂକ ପ୍ରାଧାନ୍ୟ ସାଧାରଣତଃ ହ୍ରାସ କରାଯାଇଥାଏ । କିଂତୁ ଏଠାରେ ସେହି ଗତିକୁ ଅସ୍ୱୀକାର କରି ନାଟ୍ୟକାର ରମେଶ ପାଣିଗ୍ରାହୀ ଗୋଟିଏ ନୂଆ ଓ ମୌଳିକ ପରଂପରାର ସୃଷ୍ଟି କରିଛଂତି । ପ୍ରକୃତରେ ଅନୁକରଣ ନୁହେଁ; ତାଂକ ସୃଷ୍ଟି ଚେତନା ସୃଜନଧର୍ମୀ । ଏଣୁ ଅନ୍ୟ ଚରିତ୍ରମାନଂକୁ ମହାପୁରୁଷଂକ ବ୍ୟକ୍ତିତ୍ୱର ଅଭିବ୍ୟକ୍ତି ପାଇଁ ବ୍ୟବହାର କରିଥିଲେ ମଧ୍ୟ ନାଟକରେ ସେ ଖୁବ୍ ରଂଚକରେ

ସେମାନଙ୍କୁ ସେମାନଙ୍କ ନିଜ ନିଜ ବୈଶିଷ୍ଟ୍ୟ ପ୍ରଦାନ କରିଅଛନ୍ତି । ଚରିତ୍ର ଚିତ୍ରଣରେ ଏଇ ବୈଚିତ୍ର୍ୟ ଶ୍ରୀ ପାଣିଗ୍ରାହୀଙ୍କ ନାଟ୍ୟ ପ୍ରତିଭାର ଉଦାର ନିଦର୍ଶନ ଏବଂ ଓଡ଼ିଆ ସାଂପ୍ରତିକ ନାଟକର ଗତାନୁଗତିକ ଧାରା ପାଇଁ ବୈପ୍ଳବିକ ମଧ୍ୟ । ପ୍ରତ୍ୟେକ ଚରିତ୍ର ନିଜ ନିଜ ନିଜସ୍ୱତର ପରିଚିତ ହୋଇଛନ୍ତି ଏବଂ ନିଜର ଅସ୍ତିତ୍ୱକୁ ଅବିମିଶ୍ର ରଖିଛନ୍ତି ଯଦିଓ ସେହି ଅବିମିଶ୍ର ସ୍ୱାତନ୍ତ୍ର୍ୟ ଭିତରେ ସେମାନଙ୍କ ପରସ୍ପରର ସଂପର୍କ ଗୋଟିଏ ନାଟକୀୟ କାହାଣୀ ପେଶ୍ କରିଛି ଯାହାର ଆରଂଭ ହୋଇଛି ଏକ ସ୍ୱଗତୋକ୍ତିରେ ଏବଂ ଶେଷ ହୋଇଛି ଗୋଟିଏ ସ୍ୱଗତୋକ୍ତିରେ । ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ଯେମିତି ଗୋଟିଏ ସିଂଫୋନୀର ଅନ୍ତେଷ୍ଟି । ଯାହାର ଅନେକ ଅନେକ ଲକ୍ଷଣ ସତ୍ତ୍ୱେ ଏକ ସାମଗ୍ରିକ ଏଫେକ୍ଟ ବା ପ୍ରଭାବ ଏହାର କଳାତ୍ମକ ସ୍ୱରୂପ ।

ନାଟକର ସକାଳେ ଗୋଟିଏ ଟେବେଡୋଗାର ଭିତରେ ବେଂଗ ଗବେଷକ କୃଷ୍ଣମୋହନ ଯେତେବେଳେ ଉତ୍କ୍ଷିପ୍ତ ବେଂଗମାନଙ୍କୁ ଧରି ବାଲ୍ଟି ଭିତରେ ପୁନଃସଂସ୍ଥାନ କରିବା ପାଇଁ ବ୍ୟସ୍ତ, ନାଟ୍ୟକାର ସ୍ୱଗତୋକ୍ତି ଛଳରେ ତାଙ୍କର ମନୋଭାବ ପ୍ରକାଶ କରିଛନ୍ତି ।

୧ । "ସ୍ୱାଧୀନତା ଏକ ମୂଲ୍ୟବାନ ବସ୍ତୁ···ତମ ମୁଣ୍ଡରେ ଥିବା 'ମଣି'ଟାରୁ ମଧ୍ୟ···"

୨ । "ହଁ; ତମେ ରିଭୋଲ୍ଟ (revolt) କରିପାର···ମୋ' ବିରୁଦ୍ଧରେ, ଏଇ ଘର ବିରୁଦ୍ଧରେ···ଏଇ ପରିବେଶ···ଏଇ ପୃଥିବୀ ବିରୁଦ୍ଧରେ ! କିନ୍ତୁ ମନେରଖ ହିପୋକ୍ରେଟ୍ ଦଳ, ଏ ପୃଥିବୀ ଅତି ନିଷ୍ଠୁର—ମୋ' ଭଳି···"

୩ । "ମୁଁ କାହିଁକି ନିଷ୍ଠୁର ତମେ ବୁଝିପାରିବନି । This is a world without logic···ଆଉ ମୁଁ ସେଇ ଯୁକ୍ତିହୀନ ପୃଥିବୀର ସୂତ୍ରଧର···"

ଏହି ସ୍ୱଗତୋକ୍ତି ପରେ ତାଂକର ପରିଚୟ ମିଳେ । ସେ ଜଣେ ଅଦ୍ଭୁତ ଲୋକ । ବେଂଗମାନଂକୁ ନିଜ ତଥ୍ୟ ପାଇଁ ହତ୍ୟା କରି ତାହାର ସେ କୈଫିୟତ ଦେବା ପାଇଁ ମଧ୍ୟ ଅସମ୍ମତ । ନିଜ ସ୍ତ୍ରୀଂକ ପାଇଁ ବି ତାଙ୍କର ସେଇ ମନୋବୃତ୍ତି । ଯୁକ୍ତିଯୁକ୍ତ ଉତ୍ତର ଦେବାପାଇଁ ସେ ଅମଂଗ । କିଂତୁ ନିଜକୁ ନିଷ୍ଠୁର ବୋଲି ମାନିବା ତାଂକ ପକ୍ଷେ ଗର୍ହିତ ନୁହେ । ଯେ କୌଣସି ମହାମାନବପରି ସେ ସ୍ପଷ୍ଟବାଦୀ । ନିଜ ସମ୍ପର୍କରେ ମଧ୍ୟ ତାଂକର କୌଣସି ଛଳନା ନାହିଁ । ତଥାପି ସାମାଜିକତା ପାଇଁ ସେ କୁହଂତି : "ସୋସାଇଟି ! ଡ୍ୟାମ୍ ଇଟ୍" ଓ ନିଜ ସ୍ତ୍ରୀଂକୁ ସେ ଫକ୍କୁଆ ମନେ କରଂନ୍ତି । କାରଣ ତାଂକର ଲୋକ ଲଜ୍ଜା ଅଛି ଏବଂ ନିଜ ସମ୍ପର୍କରେ ଅଛି ଏକ ସଂଭ୍ରାଂତ ଧାରଣା । କିଂତୁ ଏ ସମସ୍ତ ସତ୍ତ୍ୱେ ସେ ଖୁବ୍ ସରଳ, ଖୁବ୍ ମାନବିକ ଏବଂ ତାଂକର ମାନବିକତା ତାଂକ ସମ୍ପର୍କରେ ସମସ୍ତ ଅବାଂଛିତ ଧାରଣା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ "ଆଣ୍ଟିଥେସିସ୍" । ଅବଶ୍ୟ ସେ ନିଜକୁ ଯେତେ ନିଷ୍ଠୁର ମନେ କରଂତି, ସେତେ ନୁହଂନ୍ତି । ନିଜ ବ୍ୟର୍ଥତା ମନେ ପଡ଼ିଲେ ସେ କରୁଣ ହୋଇପଡ଼ଂନ୍ତି ଏବଂ ନିଜ ବ୍ୟର୍ଥତାର କାରଣ ଭାବେ କୁହଂନ୍ତି : "ଏମିତି ଏକ ଦାୟିତ୍ୱପୂର୍ଣ୍ଣ ଗବେଷଣା ପାଇଁ ହରଠ ଏୟାର କଂଡିସନ୍ଡ୍ ଲାବୋରେଟାରୀ ଦରକାର··ବିଗ୍ ଆପାରଠାସ . ସୁଷମ ଖାଦ୍ୟ, ଆଟାଚଡ୍ ବାଥ୍···ବିଉଟିଫୁଲ୍ ସରଗୃରକା···" ଅତଏବ ନିଜ ସମ୍ପର୍କରେ ତାଙ୍କର ଧାରଣା ବି ଠିକ୍ ବେଂଗ ଥେସିସ୍ ପରି : ମିଛ ବୋଲି କହିହେବନି, କିଂବା ସତ ବୋଲି ସ୍ୱୀକାର କରିହେବନି । ଏହାହିଁ ତାଂକ ଚରିତ୍ରର ବୈଚିତ୍ର୍ୟ ।

ମହାପୁରୁଷ କୃଷ୍ଣମୋହନ ନିଜ ବ୍ୟର୍ଥତାର କାରଣ ନିଜଠାରୁ ଦୂଆଇବାର ଚେଷ୍ଟା କରିନାହାଂନ୍ତି । ଏଣୁ ନିଜ ସ୍ତ୍ରୀଂକ ବେଆଇନ ଭାଇ ଶରଭଦ୍ରଂକ ଆକାଶ, ଅରଣ୍ୟ ଓ ସମୁଦ୍ର ତାଂକ ବ୍ୟର୍ଥମନ ପାଇଁ ଗୋଟିଏ ସୁଂଦର ପଳାୟନ ଭଳି ଆକର୍ଷଣୀୟ ହୋଇପଡ଼ିଛି ଯାହା ଫଳରେ ଶରଭଦ୍ରଂକ ଓ ନିଜ ସ୍ତ୍ରୀଂକ ସମ୍ପର୍କରେ ତାଂକର ସନ୍ଦେହ ଥିଲେ ବି ସେ ଶରଭଦ୍ରଂକ ବେଶିଆଲି ଭାବପ୍ରବଣତା ଦ୍ରୁତ ସେ ଆକୃଷ୍ଟ ହୋଇପଡ଼ିଛଂନ୍ତି ।

କିନ୍ତୁ ଏହି ବ୍ୟର୍ଥତା ଯେ କେତେକୋଟି ଭୌତିକ ଆବଶ୍ୟକତାଦ୍ୱାରା ସଂଶ୍ଳିଷ୍ଟ ପ୍ରଭାବିତ ଏହା ଯେ କୌଣସି ବାସ୍ତବ ଦ୍ରଷ୍ଟା ଅସ୍ୱୀକାର କରିବେ ନାହିଁ । ଭାରତ ଓ ବିଶେଷ କରି ଓଡ଼ିଶାରେ ପ୍ରତ୍ୟେକ ଗବେଷକ ନିଜ ଗବେଷଣା ପାଇଁ ସମାଜ ଓ ସରକାରଙ୍କଠାରୁ ବିଶେଷ କିଛି ସାହାଯ୍ୟ ପାଆନ୍ତି ନାହିଁ । ଏବଂ ଏଥିପାଇଁ 'ବ୍ରେନ୍-ଡ୍ରେଇନ୍' (Brain-drain) ଭାରତରେ ଏକ ନିତ୍ୟ ବାସ୍ତବତା । ଏଠାରେ କୃଷ୍ଣମୋହନଙ୍କ ଭଳି ପ୍ରତ୍ୟେକ ବୈଜ୍ଞାନିକ ବିବ୍ରତ । କାରଣ ନିଜ ଗବେଷଣା ଛଡ଼ା ଏମାନଙ୍କର ଆହୁରି ଅନେକ ମୁଣ୍ଡବ୍ୟଥା ରହେ । ବେଳେବେଳେ ଏହି ମୁଣ୍ଡବ୍ୟଥା ଏତେ ବଢ଼ିଯାଏ ଯେ···ମୁଣ୍ଡଟା କାଟି ଫିଙ୍ଗି ଦେବାହିଁ ମନେହୁଏ ଶ୍ରେୟ ଏବଂ ପ୍ରେୟ; ଠିକ୍ ଯେମିତି କୃଷ୍ଣମୋହନ ନିଜର ପାରିପାର୍ଶ୍ୱିକ ଅବସ୍ଥାର ଅନୁଦାର ଭ୍ରୂ-କୁଞ୍ଚନ, ନିଜ ସମାଜର ଅଶ୍ଳୀଳ କୁତୂହଳ ଏବଂ ନିଜ ଦେଶର ସରକାରଙ୍କ କାଣ୍ଡଜ୍ଞାନଶୂନ୍ୟ ନିସ୍ପୃହତାର ମୁଣ୍ଡବ୍ୟଥାରେ ବ୍ୟଥିତ ହୋଇ ନାଟକର ପରିଣତିରେ 'ହରେ କୃଷ୍ଣ ହରେ ରାମ'ର ଶରଣାଗତ ହୋଇ ଖୋଜୁଛନ୍ତି ଗୋଟିଏ ରୂପାନ୍ତର ଯେଉଁଠି ମୁଣ୍ଡ ରହିବନି ଏବଂ ରହିବନି ମୁଣ୍ଡବ୍ୟଥା । କିନ୍ତୁ ନାଟ୍ୟକାରଙ୍କ ଚତୁର ଉପସ୍ଥାପନା ଯୋଗୁଁ ତାଙ୍କର ପଳାୟନ ଦୟନୀୟ ନହୋଇ ହୋଇଛି ଏକ ଦରଦୀ ଅନୁକମ୍ପା । ମହାପୁରୁଷ କୃଷ୍ଣମୋହନଙ୍କ ପୁରୁଷତ୍ୱ ପ୍ରତ୍ୟେକ ଶ୍ରୋତା, ଦର୍ଶକ ଏବଂ ପାଠକ ମନରେ ସହାନୁଭୂତିର ଅନୁଭବ ସଂଗେ ସଂଗେ ଆକାଂକ୍ଷିତ ଅଭୀପ୍ସା ଉଦ୍ରେକ କରୁଛି । କିମ୍ଭୂତକିମାକାର ବେଙ୍ଗ ଗବେଷକ ମନେ ହୋଇଛନ୍ତି, ମନେ ହେଉଛନ୍ତି ପରିଚିତ ଏବଂ ସ୍ୱାଭାବିକ । ଅସ୍ୱାଭାବିକ ସ୍ୱାଭାବିକତା ଓ ସ୍ୱାଭାବିକ ଅସ୍ୱାଭାବିକତା ଜୀବନ୍ତ ହୋଇ ନାଟକଟିକୁ ଦର୍ଶନୀୟ, ଉପଭୋଗ୍ୟ ଏବଂ ସାହିତ୍ୟିକ ଗୁରୁତ୍ୱ ଦେଇଛି ।

**ଗୋପାଳ ରଥ (ଆତ୍ରେୟ)**
କେନ୍ଦ୍ରୀୟ ପାଠାଗାର
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର-୭

# ଶେଷପତ୍ର

ସାଂପ୍ରତିକ ନାଟକ ଉପରେ ମୁଁ ପ୍ରବନ୍ଧ ଲେଖିବା ଯେଉଁଦିନ ଆରଂଭ କଲି, ସେ ଦିନ ଭାବିଲି ମୋ' ନିଜ ନାଟକ ସଂପର୍କରେ କୌଣସି ମଂତବ୍ୟ ଦେବି ନାହିଁ । ସେଇଥିପାଇଁ 'ଧୃତରାଷ୍ଟ୍ରର ଆଖି'ର ଦାୟିତ୍ୱ କୁମାରୀ ସ୍ୱରାଜ୍ୟଲକ୍ଷ୍ମୀ ବକ୍‌ସିଂକୁ ଏବଂ ମହା.ପୁରୁଷଂକ ଦାୟିତ୍ୱ ଶ୍ରୀ ଗୋପାଳକୃଷ୍ଣ ରଥ (ଅବେୟ୍ୱ)ଙ୍କୁ ଦେଇଥିଲି । କିଂତୁ ଇତିମଧ୍ୟରେ ବଂଧୁ ଡ଼ଃ ସୁରେଂଦ୍ରପ୍ରସାଦ ଦାସ "ଜଣେ ମହାପୁରୁଷଂକ ଜନ୍ମ ଓ ମୃତ୍ୟୁ ସଂପର୍କରେ" ନାଟକର ପ୍ରଯୋଜନା ଦାୟିତ୍ୱ ନେଇଛଂତି । ଅବଶ୍ୟ ବ୍ୟବସାୟ ସ୍ୱାର୍ଥରେ ନାଟକର ନାମକରଣ ପରିବର୍ତ୍ତିତ ହୋଇ "ମଂଡୂକ ଉପାଖ୍ୟାନମ୍" ହୋଇଛି । ଏଣୁ ଏହି ଶେଷ ପତ୍ର ଲେଖିବାର ଦାୟିତ୍ୱ ଅନୁଭବ କରି ଲେଖୁଚି ।

"ଜଣେ ମହାପୁରୁଷଂକ ଜନ୍ମ ଓ ମୃତ୍ୟୁ ସଂପର୍କରେ" ମୂଳତଃ ମଂଚ ନାଟକ ହିସାବରେ ଲେଖାଯାଇଥିଲା । ମୁଁ ଟିଟିଲାଗଡ଼ର ପ୍ରଫେସର କଲୋନୀରେ ଥିବା ସମୟରେ ଗୋଟିଏ ବେଂଗ ଯେମିତି ଏକ ଗୃହପାଳିତ ଜୀବ ହୋଇ ମୋ' ଚିଂତାକୁ ଆଲୋଡ଼ିତ କରିଥିଲା ତାହାର ଏକ ନୈର୍ବେକ୍ତିକ ଓ କଳାତ୍ମକ ପରିପ୍ରକାଶ ହେଉଛି ଏହି ନାଟକ । ଅଧ୍ୟାପକ କୃଷ୍ଣମୋହନଂକ Insane ସ୍ତରକୁ ଯିବା ପାଇଁ ମତେ ତିନି ମାସ କାଳ ଅକ୍ଳାଂତ ପରିଶ୍ରମ କରିବାକୁ ପଡ଼ିଛି । ଏହାକୁ ଆପଣମାନେ Negative capability କହିପାରଂତି, କିଂବା ନୂଆ ଶବ୍ଦଟିଏ ଗଢିଲେ ତାହା ମୋ ବ୍ୟକ୍ତିତ୍ୱର ଏକ Intuitional transcendence ହୋଇପାରେ ।

ହଠାତ୍ ଦିନେ ବଂଧୁ ଦାଶରଥିପ୍ରସାଦ ଦାସଂକ ଆଖିରେ ଏ ନାଟକଟି ପଡ଼ିଲା । ସେ ଚିତ୍ରଶିଳ୍ପୀ ଏବଂ ସାହିତ୍ୟିକ । ବହିଗୁଡ଼ାକ ଯଦି ଖାଦ୍ୟ

ହୁଏ, ସେ ଏତେ ପଡ଼ନ୍ତି ଯେ ମୁଁ ତାଙ୍କୁ ଏକ ପେଟ୍-ଖାଦକ ବୋଲି କହିପାରେ । ତାଙ୍କର ପଠନ ଇଲକା ହେଲା ଦର୍ଶନ, ଧର୍ମତତ୍ତ୍ୱ ଓ ଯୁଦ୍ଧ ସାହିତ୍ୟ । ମୁଁ ପୁଣି ଆବିଷ୍କାର କଲି ବନ୍ଧୁ ଦାଶରଥି ବାବୁ ଏଇ ନାଟକଟିରେ 'ଶବ୍ଦ ଓ ଧ୍ୱନିକୁ ପ୍ରାଧାନ୍ୟ ଦେଉଛନ୍ତି ଯାହା ମୋ' କଳ୍ପନାର ଊର୍ଦ୍ଧ୍ୱରେ । ଏଣୁ ଦାଶରଥି ବାବୁଙ୍କ ପ୍ରେମରେ ପଡିଯିବା ପାଇଁ ମୁଁ ବାଧ୍ୟ ହେଲି । ଅନୁଭୂତିର ଏଇ ଅଦ୍ଭୁତ ରସାୟନ (Synthesis) ମୋର ଅନ୍ୟ କୌଣସି ବନ୍ଧୁଙ୍କ ପାଖରେ ନାହିଁ ।

ଏହା ର ବେତାର ସଂସ୍କରଣ ତିଆରି ହେଲା । ଆକାଶବାଣୀର ସାମ୍ରାଜ୍ୟ-ଉଠିଲା ଥାଉ ପଡିଲା । ବଡ଼ ଅଡୁଆ ହେଲା । ଯେମିତି ଚୀନା ସୈନ୍ୟ ଭାରତରେ ଅନୁପ୍ରବେଶ କଲେ । ଖୋଜା ପଡିଲା ରମେଶ ପାଣିଗ୍ରାହୀ ନାମକ ବଞ୍ଚିଥିବା ବ୍ୟକ୍ତିଙ୍କୁ । କଏ ସିଏ ? କେଜାଣି ! କେଜାଣି !! ତା' ପରେ ସେଇଠି ସଭା ହେଲା । ସେଠାକାର ବଡପଣ୍ଡାମାନେ ନିଷ୍ପତ୍ତି କଲେ : ଏହା ଏକ ଦୁର୍ବୋଧ୍ୟ ନାଟକ । ନିଜକୁ ଶ୍ଳୀଳ ମନେ କରୁଥିବା ଜଣେ ଭଦ୍ରଲୋକ ଏବଂ ଜଣେ ଭଦ୍ରମହିଳା କହିଲେ ଆକାଶବାଣୀରେ ଗଂଗାପାଣି ଛିଂଚ କାରଣ ନିହାତି ଅଶ୍ଳୀଳ ନାଟକଟେ ପ୍ରସାରିତ ହେଇଗଲା ।

ଏବଂ ଏସବୁ ଶୁଣି ମୁଁ ସେମାନଙ୍କ ପ୍ରତି କୃତଜ୍ଞ ହେଲି । ଖୁସି ହେଲି, କାରଣ ପ୍ରତିକ୍ରିୟାର ପାଂଚଜନ୍ୟ ବାଜିଲା । ଖୁସି ହେଲି, କାରଣ ମୁଁ ଗଭୀର ଦର୍ଶନତତ୍ତ୍ୱ ଉପରେ ଆଧାରିତ ନାଟକଟେ ଲେଖିଛି ବୋଲି ଭାବିଲବେଳକୁ ଭଦ୍ରଲୋକ/ମହିଳାମାନେ ତା' ଭିତରେ ଏକ ଆଇଁଷିଣିଆ ଗଂଧ ପାଇଲେ । ଦୋଷ ନାକର କି ନାଟକର ମୁଁ ଜାଣେନା । କିଂତୁ ମୁଁ ତୃତୀୟ ଥର ପାଇଁ ଖୁସି ହେଲି । ଏ ନାଟକର ଖାଲି ଧ୍ୱନ୍ୟାତ୍ମକ ଗୁଣ ନାହିଁ; ଏହାକୁ ଆଘ୍ରାଣ ମଧ୍ୟ କରିହୁଏ । ଏହାକୁ ସ୍ପର୍ଶ କଲେ କୁତୁକୁତୁ ଲଗୁଚି କି ନାହିଁ ସେ କଥା ବିଦଗ୍ଧ ପାଠକପାଠିକା କହିବେ ।

ପୁଣି ଏଇ ନାଟକର ମଂଚ ପରିକଳ୍ପନା କରାଗଲା । ଡା: ଦାସ ପ୍ରାୟ ବର୍ଷେ ହେବ ଏହାର ମଂଚ ଉପଯୋଗିତା ଓ ନୂତନ ପ୍ରୟୋଗ ସମ୍ପର୍କରେ ଚିଂତାଶୀଳ ଅଛଂନ୍ତି । ଦର୍ଶକଂକଠୁ ପଇସା ନେଇ ଅଢେଇ ଘଂଟାର ସଶ୍ରମ କାରଦାଂଡକୁ ତାଂକ ଉପରେ ପରୀକ୍ଷା କରାଇବା ମୋର ବ୍ୟକ୍ତିଗତ ରୁଚିର ପର୍ଯ୍ୟାୟଭୁକ୍ତ ନୁହେ । ମହର୍ଷି-ମାନଂକୁ ମଧ୍ୟ ନୀତିବାକ୍ୟ ଶୁଣାଇବା ପାଇଁ ମହାପୁରାଣ ଲେଖିବାକୁ ପଡ଼ିଥିଲା । ଆମ୍ଭେ କଦା ସ୍ଥିର ବୌଦ୍ଧିକ ଆଲୋଡନ କରିବୁ । ଓଡ଼ିଶା/ ଭାରତର ପ୍ରେକ୍ଷାଳୟରେ କୌଣସି ବୌଦ୍ଧିକ ଆଲୋଡନ ସୃଷ୍ଟି କରାଯାଇ ପାରେ ବୋଲି ମୋର ଆଶା ନାହିଁ । ତେଣୁ ପରୀକ୍ଷା ଓ ଆବସର୍ଡିଟିର ପଣସ ଖାଇ ଲୋକଂକ ମୁଂଡରେ ବୌଦ୍ଧିକଶୂନ୍ୟତାର ଅଠା ମୁଁ ବୋଳୁନାହିଁ । ନିର୍ଦ୍ଦେଶକ ବଂଧୁ ଡ଼ା: ଦାସ ଏଇ ନାଟକ ସମ୍ପର୍କରେ ଆଲୋଚନା କଲାବେଳେ ସବୁଥର ଉପରୋକ୍ତ ମତ ବ୍ୟକ୍ତ କରିଛଂନ୍ତି ।

ବ୍ରହ୍ମପୁର ସହରକୁ ଓଡ଼ିଶାର ଏକ ସାଂସ୍କୃତିକ କେଂଦ୍ର କହିବାରେ ଅନେକଂକ ଆପତ୍ତି । ତେଣୁ "ଜଣେ ମହାପୁରୁଷଂକ ଜନ୍ମ ଓ ମୃତ୍ୟୁ ସମ୍ପର୍କରେ" ନାଟକର ପ୍ରଯୋଜନା ଏକ ମୁଖ୍ୟ ସମ୍ବାଦ ନୁହେ । ଗଂଜାମ କଳା ପରିଷଦ, ଡା: ସୁରେଂଦ୍ରପ୍ରସାଦ ଦାସ କିଂବା ରମେଶ ପାଣିଗ୍ରାହୀ କେବଳ ତିନୋଟି ଅପାଂକ୍ତେୟ ନାମବାଚକ ବିଶେଷ୍ୟ ସେମାନଂକୁ ଆଂଚଳିକତାର ନୂତନ ବ୍ୟାକରଣ ପ୍ରୟୋଗ କରି ବସ୍ତୁବାଚକ ରୂପେ ରୂପାଂତରିତ କଲେ କାହାର କିଛି କ୍ଷତି ହେବ ନାହିଁ ।

କିଂତୁ ଡା: ଦାସଂକ ପରିଚାଳନାରେ ଗଂଜାମ କଳା ପରିଷଦ ଓ ତାର କଳାକାରମାନେ ଓଡ଼ିଶାର ନବନାଟ୍ୟ ଆଂଦୋଳନକୁ ଯଦି ପାଦେ ମାପି ମାପି ଠିକ୍ ଗୋଟାଏ ପାଦ ଆଗକୁ ନେଇପାରଂନ୍ତି, ତା'ହେଲେ ଓଡ଼ିଶା କୃତଜ୍ଞ ରହୁ କି ନ ରହୁ; ମୁଁ ରହିବି । ଓଡ଼ିଶାର ଜଣେ ଉଚ୍ଚ ପ୍ରତିଷ୍ଠିତ ନାଟ୍ୟକାର ମୋ' ନିଷ୍ଠା (Commitment) ସମ୍ପର୍କରେ ସନ୍ଦେହପ୍ରକାଶ କରି କହିଥିଲେ—"ହେଁ..., ରମେଶ ଲେଖୁଚି...କିଏ ଜାଣେ ତା' ଭବିଷ୍ୟତ କ'ଣ...ଶାଳ ଗଛ—ଝାଳ ଗଛ; ବଉଁଶ ଗଛ—ବାଉଁଶ ଗଛ ।"

ବାଉଁଶ ଗଛ ହେବାରେ ମୋର ଆପତ୍ତି ନାହିଁ । ମୁଁ ଏକ ନିଷ୍ଠାପର (Committed) ଘାସ ଗଛ ହେବାକୁ ଚାହେଁ । ନ ହେଲେ କୌଣସି ପ୍ରତିକ୍ରିୟା ନଥାଇ ଗତ ବାର ବର୍ଷହେଲା ମୁଁ ସାହିତ୍ୟ କରୁନଥାଂତି । ଏଇଠି ପ୍ରକାଶକ ବନ୍ଧୁ ଭାସ୍କର ବାବୁଂକ କଥା ଦି' ଧାଡ଼ି ଲେଖୁଛି । 'ମୁଁ, ଆଂଭେ ଓ ଆଂଭେମାନେ' ର ପ୍ରକାଶନ ତ୍ରୁଟିକୁ ସେ ମୁକ୍ତ-କଂଠରେ ସ୍ୱୀକାର କରିଛଂତି । ଦ୍ୱିତୀୟ ମୁଦ୍ରଣରେ ତାହା ସଂଶୋଧିତ ହୋଇ ନାଟକଟି ତାର ନିଜସ୍ୱ ସାହିତ୍ୟିକ କଳେବର ଗ୍ରହଣ କରିବ ଇତିମଧ୍ୟରେ ବ୍ରହ୍ମପୁର ସହରର ସାଂସ୍କୃତିକ ବିପ୍ଳବ ସହିତ ଭାସ୍କର ବାବୁ ନିଜକୁ ସାମିଲ କରିଦେଇଛଂତି । କେବଳ ମୁଁ ନୁହେଁ, ଅନେକ ଅପାଂକ୍ତେୟ ଲେଖକଂକର ଦାୟିତ୍ୱ ତାଂକ ମୁଂଡ ଉପରେ । ଏଇ ନାଟକର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିବା ମଧ୍ୟ ଏକ ଦୁଃସାହସ—ଏହା ମୁଁ ଜାଣେ, ମୋ' ଫ୍ୟାକ୍ଟେରୀରେ ବସି, ଚୁଲୁଗୁଲୁ ତିଆରି ହେଉନି । ପୁଣି ଓଡ଼ିଶାର ସର୍ଟିଫିକେଟେଡ୍ ପ୍ରକାଶକ ଓ ଲେଖକମାନେ ନାଟକକୁ ସାହିତ୍ୟ ବୋଲି ଗ୍ରହଣ ନ କରୁଥିବା ସ୍ଥଳେ ଭାସ୍କର ବାବୁଂକ ଏ ପ୍ରୟାସ ମତେ ତାଂକ ପାଖରେ କୃତଜ୍ଞ ରଖିବ । ଶିଳ୍ପୀବନ୍ଧୁ ସୀତାକାନ୍ତଂକ ଶ୍ରମ ମୁଁ ଭୁଲି ପାରିବିନି

ଦୁଇ ବର୍ଷ ପରେ ଏହି 'ଦୁର୍ବୋଧ ଓ ଅଶ୍ଳୀଳ' ନାଟକଟି ଆପଣ-ମାନଂକ ପାଖରେ ପହଂଚୁଛି । ଏଇ ଅବସରରେ ଆପଣଂକ ମତାମତ ଜାଣିପାରିଲେ ଏ ଅକିଂଚନ ତାର ଆଗାମୀ ନାଟକଗୁଡ଼ିକ ଲେଖିଲାବେଳେ ଆପଣମାନଂକ ମନକଥାଗୁଡ଼ାକ ଆହୁରି ଭଲଭାବେ ବ୍ୟକ୍ତ କରିବାରେ ସମର୍ଥ ହେବ ।

॥ ରମେଶପ୍ରସାଦ ପାଣିଗ୍ରାହୀ ॥

# ଆବିର୍ଭାବ

ଏକ ପ୍ରଶସ୍ତ ଡ୍ରଇଂ ରୁମ୍ । କିନ୍ତୁ ଆଧୁନିକ ନୁହେଁ । ପୁରୁଣା ହୋଇ ଆସିଲାଣି କାନ୍ଥର ରଂଗ । ଝରକା ସେତେ ବଡ ନୁହେଁ । ଦେଖିଲେ ମନେ ହେବ ଗୋଟିଏ ବଡ଼ଘରର କିଛି ଅଂଶ ଯେମିତି ଭଡାରେ ଦିଆଯାଇଛି । ପଛପଟକୁ ଶୋଇବା ଘର ଏବଂ ଦୁଆର ଉପରେ ପରଦା ଝୁଲୁଚି । କିନ୍ତୁ ଡ୍ରଇଂ ରୁମର ପଛପଟେ ଅର୍ଥାତ୍ ଶୋଇବା ଘରକୁ ଲାଗି ଡାହାଣ ପଟେ କାନ୍ଥ ନାହିଁ । ସେଇ ଖୋଲା ଅଂଶ (ଯାହା ପ୍ରାୟ ମଂଚର ଦୁଇ ତୃତୀୟାଂଶ ଅଧିକାର କରିବ) ଦେଇ ଆକାଶ ଏବଂ ରଜନୀଗଂଧା ଗଛର ଫାଲେ ଦେଖାଯିବ । ନାଟକର ସମୟ ଓ ନିର୍ଦ୍ଦେଶ ଅନୁଯାୟୀ ସେଇ ଆକାଶର ରଙ୍ଗ ନୀଳ, ସବୁଜ, ବାଇଗଣି, ଲାଲ କିଂବା ଏଇ ସବୁ ରଂଗ ମିଶି ଏକ ସ୍ୱପ୍ନିଳ, ବନ୍ୟ, ବିକୃତ ଏବଂ ଅସ୍ଥିର ହୋଲି ଖେଳ ଭଳି ବଦଳାଇ ଦିଆଯିବ । ଦରକାର ହେଲେ ଆଲୋକ ପରିପାଟୀ ସାହାଯ୍ୟରେ ମେଘ ଉଡ଼ିବା ଦେଖାଇ ଦିଆଯାଇପାରେ । କିନ୍ତୁ ପ୍ରଥମ ଅଂକରେ ଆଦୌ ଆକାଶ ଦେଖାଯିବ ନାହିଁ । ସେଇ ଆକାଶ ଦିଶୁଥିବା ଖୋଲା ଅଂଶଟିରେ ଏକ ମୋଟା ପରଦା, ଖୁବ୍ ପ୍ରଶସ୍ତଭାବେ ଝୁଲୁଛି ।

ଡ୍ରଇଂ ରୁମ୍ କେବଳ ନାମ ମାତ୍ର । କିନ୍ତୁ ସେଠାରେ ଆଭିଜାତ୍ୟର କୌଣସି ଝଲକ ନାହିଁ । ବର୍ତ୍ତମାନର ଗୃହକର୍ତ୍ତା ଅଧ୍ୟାପକ କୃଷ୍ଣମୋହନ ମହାପାତ୍ର—ପ୍ରାଣୀବିଜ୍ଞାନ ବିଭାଗ । ବୟସ ପାଖାପାଖି ଚାଳିଶି ବର୍ଷ । ମୁଣ୍ଡର ବାଳ ଗୋଟିଏ ଗୋଟିଏ ଧଳା ହୋଇ ଆସିଲାଣି । କିନ୍ତୁ ଲକ୍ଷ୍ୟ କରି ହେବ ନାହିଁ । ସାମାନ୍ୟ ଟିକିଏ ଚଂଦାମୁଣ୍ଡ । କେତେକ ସମୟରେ ଏକ ଉଚ୍ଚା ଜୋକର୍ ଟୋପି ଭଳି କୌଣସି ଧର୍ମ ସଂସ୍ଥାର ଟୋପିଟିଏ ପିଂଧିଥିବା ଲକ୍ଷ୍ୟ କରାଯାଏ । ତା' କିନ୍ତୁ ଅତି ଅଳ୍ପ ସମୟ ପାଇଁ

ଏବଂ ଅତି ଅତର୍କିତାର ସନ୍ଧିତ । ପତ୍ନୀ ମାଧବୀଙ୍କ ଦୃଷ୍ଟିରେ ନ ପଡ଼ିଲା ଭଳି । ଘରର ଆସବାବ ପତ୍ର ହେଲା ଗୋଟିଏ ବଡ଼ ଟେବୁଲ ଏବଂ ତା' ଉପରେ ଏକ ଲାଲ ରଂଗର ବଡ଼ ପ୍ଲାଷ୍ଟିକ ବାଲ୍‌ଟି । ବାଲ୍‌ଟିରେ ଅଧାପାଣି ଏବଂ ପ୍ରାୟ ପଚଶ ଗୋଟି ଗ୍ଲେଟ ବନ୍ଦ ହୋଇ ବେଂଗ ସେଥିରେ ଗୁଡ଼ି ଦିଆଯାଇଛି । କୃଷ୍ଣମୋହନ ବସିଲା ଭଳି ଗୋଟିଏ ଚୌକି ଏବଂ ସାମନାରେ ଗ୍ଲେଟ ଟେବୁଲ ଉପରେ ଗୋଟାଏ ଟାଇପ୍ ମେସିନ୍ । ବାଲ୍‌ଟି ପାଖରେ ସେଇ ବଡ଼ ·ଟେବୁଲ ଉପରେ ଏକ ଅଣୁବୀକ୍ଷଣ ଯନ୍ତ୍ର, ଗୋଟିଏ ଟ୍ରେ ଏବଂ କିଛି ଡ଼ିସେକ୍‌ସନ୍ ଯନ୍ତ୍ରପାତି । କାନ୍ଥରେ କୌଣସି ଚିତ୍ର, କ୍ୟାଲେଣ୍ଡର କିଂବା ଡ଼ିଜାଇନ୍ ରହିପାରିବ ନାହିଁ । ଶୋଇବା ଘର ପରଦା ଖୋଲି ଦେଲେ ଏକ ପଲଂକ ଭଳି ବଡ଼ ଖଟ ଦେଖାଯାଏ । ସେଇ ଘରଟି ଆବଶ୍ୟକ ଅନୁଯାୟୀ ଆଲୋକିତ ଏବଂ ଅଂଧାର ହେବ । ସେତେଇ ଘର ଦେଇ ମଂଚର ଆବଶ୍ୟକତା ଅନୁଯାୟୀ ଗ୍ଲେଟ ଟିଣ ଚେୟାର ଗୋଟାଏ ଦୁଇଟା ଆଣିହେବ ।

ଏଇ 'ଆବର୍ତ୍ତ'ର ସକାଳ ଏକ ରବିବାର । ଘରେ କୋଳାହଳ ନାହିଁ । କାରଣ ବାସିନ୍ଦା କେବଳ ଦୁଇଜଣ । ମଂଚ ଆଲୋକିତ ହେଲାବେଳକୁ ଦେଖାଗଲା ·ଶ୍ରୀ ମହାପାତ୍ର ଡ୍ରଇଂ ରୁମ୍‌ରେ ଖୁବ୍ ବ୍ୟସ୍ତ ହେଉଛଂତି । ଦେହରେ ଘରର ପୋଷାକ ସେମିତି ଲାଗିରହିଛି । ହାତରେ ଚା' କପ ଓ ପିଆଲା, ପାଟିରେ ସିଗାରେଟ୍ ଅଠା ହୋଇ ଲାଗି ରହିଛି । ଟ୍ରେରେ ଅଧାକଟା ବେଂଗ କେତୋଟା । କୃଷ୍ଣବାବୁ ପ୍ଲାଷ୍ଟିକ ବାଲ୍‌ଟିର ଘୋଡ଼ଣୀ ବାହାର କରିବା ମାତ୍ରେ ଏକା ସାଂଗେ ଦୁଇ/ତିନୋଟି ବେଂଗ ବାହାରକୁ ଡ଼େଇଁଛଂତି । କୃଷ୍ଣବାବୁ ସେମାନଂକୁ ଧରିବା ପାଇଁ ବ୍ୟର୍ଥ ପ୍ରୟାସ କରୁ କରୁ ହାତରୁ କପ୍ ଓ ପ୍ଲେଟ୍ ଖସି ପଡ଼ୁଛି । କିଛି ଅବଶିଷ୍ଟାଂଶ ଚା' ମଧ ଢ଼ାଳି ପଡୁଛି । କିଂତୁ କପ୍ ଓ ପ୍ଲେଟ୍ ଷ୍ଟିଲ୍‌ରେ ତିଆରି । ତେଣୁ ଭାଂଗିନି । ସେଇ ବ୍ୟସ୍ତତା ଭିତରେ କୃଷ୍ଣବାବୁଂକ ମୁହଁରେ ଫୁଟି ଉଠିଛି ଏକ ଚାପା କ୍ରୋଧ ମିଶା ବିରକ୍ତି । ପୁଣି ବେଂଗ-ମାନଂକ ଉପରେ କିଛି କରୁଣା ଜାତ ହେଲା ପରି ହୋଇ କୃଷ୍ଣବାବୁଂକ ଓଠରେ ଏକ ସ୍ମିତ ହାସ୍ୟରେଖା ଦେଖାଦେଇଛି । ସେ ସେମାନଂକ ଉଦ୍ଦେଶ୍ୟରେ ଭାଷଣ ଦେଇଛଂତି

ନା, ନୋ' ମାଇ ଫ୍ରେଣ୍ଡସ୍ ! ସ୍ୱାଧୀନତା ଏକ ମୂଲ୍ୟବାନ୍ ବସ୍ତୁ । ତମ ମୁଣ୍ଡ ଉପରେ ଥିବା ମଣିଠାରୁ ମଧ୍ୟ ଆହୁରି ମୂଲ୍ୟବାନ୍ । ଏତେ ସହଜରେ ତୁମକୁ ସ୍ୱାଧୀନତା ଦିଆଯାଇ ପାରିବନି........ କାରଣ ଏଇ ଏଗାର ବର୍ଷର ପ୍ରୟାସ ତମର ବ୍ୟର୍ଥ ହୋଇ..... ହାଃ—ହାଃ—ୟୁ ଷ୍ଟୁପିଡ୍ ନୋ' ପ୍ୟୋର୍ ଇମିଟେଶନ୍ସ୍ (ଟିକିଏ ରହି) ହିଁ । ତମେ ରିହେଲ୍ଟ୍ କରିପାର । (ଧରୁ ଧରୁ ପୁଣି ଗୋଟାଏ ବେଂଗ ଖସି ପଳେଇଛି) ମୋ' ବିରୁଦ୍ଧରେ । ଏଇ ଘର ବିରୁଦ୍ଧରେ... ଏଇ ପରିବେଶ...ଏଇ ପୃଥିବୀ ବିରୁଦ୍ଧରେ (ପୌରାଣିକ ନାଟକର କଂସ ମହାରାଜା ଭଳି ମୁଖଭଂଗୀ କରି) କଂତୁ ମନେରଖ ହିପୋକ୍ରେଟ୍ ଦଳ ! ଏଇ ପୃଥିବୀ ଅତି ନିଷ୍ଠୁର । ମୋ' ଭଳି ! କାହିଁକି ତମେ ପଚାରି ପାରିବନି...କାରଣ ସେଇ କାହିଁକିର ଅର୍ଥ ନାହିଁ...ଉତ୍ତର ନାହିଁ...ମୁଁ କାହିଁକି ନିଷ୍ଠୁର ସେ କଥା ତମେ ପଚାରି ପାରିବନି । ଦିସ୍ ଇଜ୍ ଏ ୱାର୍ଲ୍ଡ ୱିଥ୍ ଆଉଟ୍ ଲଜିକ୍...ଆଜି ମୁଁ ସେଇ ଯୁକ୍ତିହୀନ ପୃଥିବୀର ସୂତ୍ରଧର...ପପେଟ୍ ଡାନ୍ସ କରୁଚ ତମେମାନେ ମୋ' ହାତରେ...(ଧରିଲେ ଗୋଟାଏ ବେଂଗକୁ...ପୁଣି ଟିକିଏ ପରେ ଆଉ ଏକ ବେଂଗ)...ପପେଟ୍ ଡାନ୍ସ...କଂଢେଇ ନାଚ !! (ଏଇଥରର ହସଟା ଐତିହାସିକ ବୋଲି ଧରି ନିଆଯାଇପାରେ) ।

[ ଏବଂ ସେଇ ହସର ଶବ୍ଦ ଓ କର୍କଶତାରେ ବ୍ୟସ୍ତ ହୋଇ ଭିତରୁ ଆସିଲେ ମାଧବୀ । ଅଭିନେତାଙ୍କୁ ସାବଧାନତାର ସହିତ ଅଭିନୟ କରିବାକୁ ପଡ଼ିବ । ସାମାନ୍ୟ ଅବହେଳା କଲେ ଅଭିନୟ ପାଗଳ ଭଳି ଦେଖାଯିବ, ଯାହା ଆଦୌ ବାଂଛନୀୟ ନୁହେଁ । ]

॥ ତିନି ॥

ମାଧବୀ

କ'ଣ ହେଉଛ ? ସକାଳୁ ସକାଳୁ ଏମିତି ପାଗଳଙ୍କ ଭଳି ହସୁଚ କାହିଁକି ? ଏଇଟା ଜଣେ ପ୍ରଫେସରଙ୍କ ଘର ନା ରିକ୍ସାବାଲାର ? ସାଇ ପଡ଼ଶା କ'ଣ ଭଲ କହିବେ ? (ହଠାତ୍ ତଳେ ପଡ଼ିଥିବା କପ୍-ପ୍ଲେଟ ଦେଖି) ଆରେ ! ଏଇଟାକୁ ଏମିତି ତଳେ ପକାଇ ଦେଇଚ ଯେ ? କ'ଣ ପକେଟରୁ ପଇସା ଖର୍ଚ୍ଚ କରି କିଣିଲ ଭଳି ଲାଗୁଚି ନା କ'ଣ ? (ଯତ୍ନ ସହକାରେ ସେଗୁଡ଼ିକ ଗୋଟାଉ ଗୋଟାଉ) ଘରଦ୍ୱାର ଘାଣ୍ଟି ଏଇଠି ଏଗାର ବର୍ଷ ହେଲା ବେଙ୍ଗ ମାରୁଛ ଯେ କ'ଣ ପାଇଲ ? ମୁଣ୍ଡରୁ ମଣି ମିଳିଲା ? (କପ୍-ପ୍ଲେଟ ନେଇ ଭିତରକୁ ଯାଉ ଯାଉ) 'ମଣି' ନା 'ଛେନା' ମ ?

କୃଷ୍ଣମୋହନ

ସମୁଦାୟ ପ୍ରଶ୍ନ ସଂଖ୍ୟା ହେଲା ନ' ଗୋଟି···କଂରୁ କୌଣସିଟିର ଉତ୍ତର ଦିଆଯାଇ ପାରିବନି !! (ପୁଣି ହସି ହସି) କାରଣ ଆଜିଯାଏଁ କୌଣସି ପ୍ରଶ୍ନର ଉତ୍ତର ଦିଆ ଯାଇନାହିଁ । (ଜଣେ ମୁଣ୍ଡରେ ଅନେକ ବାଳଥିବା ସାଧୁବାବାଙ୍କ ଭଳି ସୁନ୍ଦର ମାଇଚିଆ ହସଟେ ହସି) ପାଇଚି ! ମୁଁ 'ମଣି' ପାଇଚି !!

ମାଧବୀ

ଛେନା ପାଇଚ ! ସାଇ ପଡ଼ଶାରେ ମୁଁ ଆଉ ମୁଣ୍ଡ ଟେକି ଚାଲିପାରୁନି । ସମସ୍ତେ କହୁଛନ୍ତି ବେଙ୍ଗ ପୋଷିଛନ୍ତି ବୋଲି···

କୃଷ୍ଣମୋହନ

ସାଇ ପଡ଼ଶା ? ଡ୍ୟାମ୍ ଇଟ୍ ! କୃଷ୍ଣମୋହନ ମହାପାତ୍ର ଏମ୍. ଏସ୍‌ସି. ଙ୍କ ସ୍ତ୍ରୀ ହୋଇ ତମେ ସାଇ ପଡ଼ଶାଙ୍କୁ ଖାତିର କରୁଚ ? ତମେ ମାଧବୀ ବାସ୍ତବିକ୍ ମରହଟ୍ଟୀ···ନିଜକୁ କେତେ ଆଧୁନିକା ପରି ସଜେଇଲେ ବି ମୁଁ କହିବି ତମେ ବିଂଶ ଶତାବ୍ଦୀରେ ଜନ୍ମ ନ ହୋଇ ସପ୍ତଦଶ ଶତାବ୍ଦୀରେ ଜନ୍ମ ହେବାର ଥିଲା ।

ମାଧବୀ

ହଉ । ହେଲା । ତମେ ଯାହା କହୁଚ···ମୁଁ ଆଦୌ ଜନ୍ମ ନ ହେବାର ଥିଲା···ଭୁଲ୍‌ରେ ଜନ୍ମ ହୋଇଗଲି···ତା'ଠୁ ଭୁଲ୍ ତମ

ହାତ ଧରି ବାହା ହେଇଗଲି... । କିଂତୁ ତମେ ଏଇଠି ଏଗାର ବର୍ଷ ହେଲା ବେଂଗ ମାରି ମାରି କୋଉ କୀର୍ତ୍ତି ଅର୍ଜି ପକେଇଲ ?

କୃଷ୍ଣମୋହନ

ଦେଖିବ ସେ ରେଜଲ୍ଟ୍ ଲେଟର୍ ଡେ' ନିଶ୍ଚୟ ଆସିବ...ତମ ଦେଶର ଲୋକେ ମୋ' ପାଖକୁ ଦୌଡ଼ି ଆସିବେ । ଫୁଲମାଳ ନେଇ...ବଂଦାପନା ଥାଳି ଧରି ଆମ କଲେଜର ଝିଅମାନେ ଆସିବେ ।

ମାଧବୀ

ଲାଜ ମାଡ଼ୁନି ? ତମେ ଏଇ ଏଗାର ବର୍ଷର ବ୍ୟର୍ଥ ଜୀବନ ବିତେଇ ସାରି ଆହୁରି ଆଶାବାଧି ହଉଚ ? ମୁଁ ହେଇଥିଲେ ବେଂଗ-ଫେଂଗ ଗୁଡ଼ି ଘରି କୋଣେ ଭାଗ୍ୟକୁ ଆଦରି ବସି ସାରନ୍ତିଣି !

କୃଷ୍ଣମୋହନ

କିଂତୁ କ'ଣ କରିବି ମାଧବୀ ? (ଅତି କରୁଣ ଭାବରେ) ବେଂଗ ମଥାରୁ ମଣି ବାହାର କରିବା ମୋର ନିଶା ହୋଇଗଲାଣି । (ହଠାତ୍ ନିଜ ଉପରେ ବିରକ୍ତ ହେଲା ଭଳି) କିଂତୁ ଏମିତି ପରିବେଶ ଭିତରେ କୌଣସି ବୈଜ୍ଞାନିକ ରିସାର୍ଚ୍ଚ କରିପାରିଲାଣି ? ତମେ କେବେ ଶୁଣିଚ ଏମିତି ମଶା ଉଡ଼ଣ ସାଂଗରେ ପଖାଳ ପିଆଜ ଖାଇ କୌଣସି ଶିକ୍ଷକ ଗୃହଶଦ୍ଧ ଟଂକା ଦରମାରେ ଏତେ ବଡ଼ ରିସାର୍ଚ୍ଚ କରିଛୁ ? ତା' ପୁଣି ଏମିତି ଅସ୍ୱାସ୍ଥ୍ୟକର ଜାଗାରେ ।

ମାଧବୀ

ଯେତେବେଳେ ପଚାରିଲେ ତମେ ସେଇ ଗୋଟାଏ କଥା କହି ଠକି ଦେଉଚ !

କୃଷ୍ଣମୋହନ

ଏମିତି ଏକ ଦାୟିତ୍ୱପୂର୍ଣ୍ଣ ଗବେଷଣା ପାଇଁ ବିଦେଶ ଏୟାର୍ କଂଡିସନ୍ଡ୍ ଲାବୋରଟୋରି ଦରକାର...ବିଗ୍ ଆପରଟସ୍... ସୁଷମ ଖାଦ୍ୟ...ଆଟାଚ୍ଡ୍ ବାଥ...ବିଉଟିଫୁଲ୍ ପରିଚାରିକା...

ମାଧବୀ

(ରାଗିଯାଇ) ହୁଁଃ, ପରଗଚ୍ଛରକା ।

କୃଷ୍ଣମୋହନ

(ହଠାତ୍ ବଜ୍ରପାତ କଲାଭଳି) ତମେ ମୋ' ଗବେଷଣାରେ ବାଧା ସୃଷ୍ଟି କରୁଛ ! ତମ ଲାଗି ମୋ' ଗବେଷଣା ଏଗାର ବର୍ଷ ହେଲା ଫେଲ୍ ମାରୁଛି ।

ମାଧବୀ

ହଁ'ମ, କନ୍ଧବନ କାହିଁକି ? ସବୁ ଦୋଷ ତ ମୋର । ମୁଁ ତ ତମକୁ ମୂର୍ଖ କରିଦେଲି । ମୁଁ ତମ ପାଖରେ ଠିଆ ହେଲେ ତମର ଉତ୍ସାହ ହୋଇଯାଉଛି...ମୋ' ଲାଗି ତମେ ବହି ପଢ଼ି ପାରୁନ...ବେଂଗ କାଟି ପାରୁନ । ହଉ, ଏ ଘରକୁ ମୁଁ କାହିଁକି ଆସିବାକି ?

[ ଅଭିମାନରେ ଚାଲିଗଲେ । କୃଷ୍ଣ ବାବୁ ବେଂଗମାନଙ୍କୁ ଧରି ନେଇ କ୍ଲୋରୋଫର୍ମ ଦେଲେ । ବେଂଗମାନଂକର ମୁହଁରୁ ଖୁବ୍ ହସି ହସି ଉପଭୋଗ କଲେ । ପୁଣି ତାଂକ ମନରେ କଳପ୍ରଭ ଏକ ଘୃଣାଭାବ ଜାତ ହେଲା । ମୁହଁ ବିକୃତ ହୋଇ ଉଠିଲା । ତଥାପି ସେ ବେଂଗଟାକୁ ନେଇ ଟ୍ରେରେ ରଖିଲେ ଏବଂ କାଟିବା ଆରମ୍ଭ କଲେ । ବର୍ତ୍ତମାନ ପୁଣି ସେ ମନଯୋଗ କଲାବେଳକୁ ଆସି ମାଧବୀ ସେଇଠି ଠିଆ ହୋଇ ଆଗ୍ରହ ସହକାରେ ଦେଖିବାକୁ ଲାଗିଲେ । ]

କୃଷ୍ଣମୋହନ

(ଭ୍ରୂଲତା ଟେକି ଚାହିଁଲେ) କ'ଣ ?

ମାଧବୀ

(ଟିକଏ ହସିଲେ । କିଛି ଇଂଗିତ ଥିଲା ଭଳି)

॥ ଛଅ ॥

କୃଷ୍ଣମୋହନ

କ'ଣ ?

ମାଧବୀ

ସେ ଘରେ ବେଂଗ ଦୁ'ଟା ରଡ଼ି ଗୁଡ଼ୁଛନ୍ତି ।

କୃଷ୍ଣମୋହନ

କାହିଁକି ?

ମାଧବୀ

ଗୋଟିଏ ପୁରୁଷ ବେଂଗ ଏବଂ ଅନ୍ୟଟି...

କୃଷ୍ଣମୋହନ

(ଆଶ୍ଚର୍ଯ୍ୟ ହୋଇ) ତା' ମାନେ ? ତମେ ଏ ଭିତରେ ଅଂଡିରା ଓ ମାଈ ବେଂଗ ଚିହ୍ନି ପାରିଲଣି ?

ମାଧବୀ

ମଲା ! ବେଂଗ ରାଜ୍ୟରେ ଏଗାର ବର୍ଷ ହେଲା ବଂଚିଛୁଟି !

କୃଷ୍ଣମୋହନ

(ଅନ୍ୟମନସ୍କ ଭାବେ) ଓ...! (ପୁଣି କାମରେ ମନ ଦେଲେ)

ମାଧବୀ

ଶୁଣୁଚ...!

କୃଷ୍ଣମୋହନ

ହଁ ।

ମାଧବୀ

ସେ ଘରେ ବେଂଗ ଦୁ'ଟା ରଡ଼ି ଗୁଡ଼ୁଛନ୍ତି ।

କୃଷ୍ଣମୋହନ

ଆଶ୍ଚର୍ଯ୍ୟ ! ବେଂଗ ରଡ଼ି ଗୁଡ଼ିଲେ ମତେ କାହିଁକି ଗୁହାରି କହୁଛ ?

ମାଧବୀ

ବେଂଗ କାଟି କାଟି ତମ କାନ ପଥର ହୋଇଗଲାଣି । ତମ ଧିଅ ବରଫ ହୋଇଗଲାଣି । ସେଇଥି ପାଇଁ ତମର କଷ୍ଟ ହଉନି ।

॥ ସାତ ॥

କୃଷ୍ଣମୋହନ

ତମର କ'ଣ ହଉଚି ?

ମାଧବୀ

(ରାଗିଯାଇ) କ'ଣ ହେବ ? ହବ ଗୋଟାଏ କ'ଣ ?

କୃଷ୍ଣମୋହନ

ମୁଁ ପଚାରୁଚି ବେଂଗ ବୋବେଇଲେ ତମର କ'ଣ ହଉଚି ?

ମାଧବୀ

ମେଘ ହେଲେ ମୟୂରର ଯାହା ହୁଏ !

କୃଷ୍ଣମୋହନ

(ବୁଝିପାରି) ଓଃ ? ନାଚିବାକୁ ଇଚ୍ଛା ହଉଚି ତମର ? ବେଶ୍, ନାଚ ।

ମାଧବୀ

ତମ ମୁଂଡ ଖରାପ ହେଇଗଲାଣି ।

କୃଷ୍ଣମୋହନ

ଆଉ କ'ଣ କହୁଚ ତମେ ?

ମାଧବୀ

ବେଂଗ ରଡିଲେ ପରା ଘରକୁ କିଏ ଆସଂତି ।

କୃଷ୍ଣମୋହନ

(ହଠାତ୍ ଚମକି ପଡିଲେ ଏବଂ ବେଂଗମାନଂକୁ ଛାଡିଦେଲେ) ଏଁ ? କିଏ ଆସିବ ? କାହିଁକି ଆସିବ ? ମାନେ···ମୋ' ଘରକୁ କିଏ କାହିଁକି ଆସିବ ?

ମାଧବୀ

ମଲା ! ତମ ଭଲ ସବୁ ଅଲଗା ହେଇଛଂତି ନା କ'ଣ ମ ? କାହା ଘରକୁ କିଏ ବଂଧୁ ଆସେନ ?

କୃଷ୍ଣମୋହନ

(ଜଣାଗଲା ଯେମିତି ଉପୃଥିତ ହୋଇ ପଡିଛଂତି) ନା, ମୋ' ଘରକୁ କାହାରି ଆସିବା ଦରକାର ନାଇଁ । ମୁଁ ଏକାଂତ ବେଂଗ ଗବେଷକ

ଏଗାର ବର୍ଷ ହେଲା ଏମିତି ଏକଲା ବଂଚି ଆସିଛି । ଗବେଷଣା କରିଛି...ମୋ' ଘରକୁ କେହି ଆସିବା ଦରକାର ନାହିଁ ।

ମାଧବୀ

କିନ୍ତୁ ବେଙ୍ଗ ରଡ଼ୁଚି ।

କୃଷ୍ଣମୋହନ

ବେଙ୍ଗ ରଡ଼ିବା ସହିତ କିଏ ଆସିବାର ସଂପର୍କ କ'ଣ ?

ମାଧବୀ

ନା, ମାନେ...ଆମେ ବାହା ହେବା ବର୍ଷ ଠିକ୍ ଏମିତି...

କୃଷ୍ଣମୋହନ

(ଅଧ୍ୟାପକ ଭଙ୍ଗୀ) ଫୁସ୍ !! (ହସିଲେ) ତୁମେ ଗୋଟାଏ ବୋକୀ !! (ବୁଝେଇ ଦେଲେ) କାଉ ରଡ଼ିଲେ ବନ୍ଧୁ ଆସନ୍ତି ।

ମାଧବୀ

କିନ୍ତୁ ମୋର ଯେମିତି ମନେ ହେଉଚି ବେଙ୍ଗ ରଡ଼ିଲେ...

କୃଷ୍ଣମୋହନ

(ଜୋର୍ ଦେଇ) ଭୁଲ୍ ମନେ ହେଉଚି । କାହିଁକି ମନେ ହେଉଚି ? କିଏ ଆସିବ ମୋ' ଘରକୁ ?

ମାଧବୀ

କିଏ ଜଣେ ବନ୍ଧୁ...ରିଲେଟିଭ୍ !

କୃଷ୍ଣମୋହନ

ଆମର ପୃଥିବୀରେ କେହି ରିଲେଟିଭ୍ ନାହାନ୍ତି । ଆଫ୍‌ଟର୍ ଅଲ୍ କିଏ କାହାର ରିଲେଟିଭ୍ ? କିଏ କାହାର ବନ୍ଧୁ ହୋଇପାରେ ? ଆଇ ଡୋଂଟ୍ ଥିଂକ୍ ! ପୃଥିବୀରେ ବନ୍ଧୁ ଥାଇପାରନ୍ତି ବୋଲି ମୋର ମନେ ହୁଏନା ତ !

ମାଧବୀ

ଅଛନ୍ତି ।

|| ନଅ ||

କୃଷ୍ଣମୋହନ

ମୁଁ ଭଲଭାବେ ଜାଣେ ମୋର କେହି ବନ୍ଧୁ ନାହାଁନ୍ତି । କଲେଜର ଅଧ୍ୟାପକମାନଙ୍କ ସହ କଥାବାର୍ତ୍ତା କରିବାକୁ ମୁଁ ଭଲ ପାଏନି । କାରଣ ସେଗୁଡ଼ା ମାନସିକ ରୋଗୀ...ତା' ଛଡ଼ା ଘରକୁ ଆସିଲା ଭଳି...

ମାଧବୀ

(ହସି) ତମର ସିନା ନାହାଁନ୍ତି...! ଆଜ ବୀର ଭାଇ ଆସୁଛନ୍ତି ।

କୃଷ୍ଣମୋହନ

ତମର 'ବୀର ଭାଇ' ?

ମାଧବୀ

ହଁ ।

କୃଷ୍ଣମୋହନ

କାଇଁ, ସେଇ ମହାପୁରୁଷ କେବେ ଏଇ କୁଟୀରରେ ପାଦ ଦେଲେ ଭଲ ତ ମୋର ମନେ ପଡୁନି !

ମାଧବୀ

ସିଏ ମୋର ମାମୁଁଙ୍କ ଜୋର ପୁଅ ବୀରଭଦ୍ର—ବୀର ଭାଇ ।

କୃଷ୍ଣମୋହନ

ହୁ ଇଜ୍ ଦ୍ୟାଟ୍ ବୀରଭଦ୍ର ? ସେ କେମିତି ତମର ଭାଇ ହେଲ୍ ?

ମାଧବୀ

ମାନେ ?

କୃଷ୍ଣମୋହନ

ମୁଁ ପଚାରୁଛି ସେଇ ଭଦ୍ରଲୋକଟି କିଏ ? କ'ଣ କରୁଛନ୍ତି ? କାହିଁକି ଆସୁଛନ୍ତି ଏବଂ...

ମାଧବୀ

(କଥା ଛଡାଇ) ଓଃ ! କହିଲ ପରା ସିଏ 'ବୀର ଭାଇ' !

କୃଷ୍ଣମୋହନ

ଆମ ବାଡ଼ାଘର ବେଳେ ଯିଏ ରଙ୍ଗ ପକାଇ ମୋର ଟେରେଲିନ୍ ସାର୍ଟ ନଷ୍ଟ କରିଥିଲା—ସେଇ ?

ମାଧବୀ

ନା ।

କୃଷ୍ଣମୋହନ

ବାଲିଯାତ୍ରାବେଳେ ତମକୁ ନେଇ ଯିଏ ଚକ୍ର କଣେଇ ଦେଇଥିଲା ? (ଅନ୍ୟମନସ୍କ ହେଲେ) ।

ମାଧବୀ

ନା ।

କୃଷ୍ଣମୋହନ

ଆଉ ? ତମେ ପିଲାଦିନେ ଯାହା ସାଂଗରେ ବୋହୂବୋହୂ ଖେଳୁଥିଲ ବୋଲି କୁହ, ସିଏ ?

ମାଧବୀ

ସିଏ କେମିତି ମୋ' ମାମୁଁଙ୍କ ଶଳା ହବ ମ ?

କୃଷ୍ଣମୋହନ

ମାମୁଁଙ୍କ···ମାନେ ତମ ମାମୁଁଙ୍କ ଶଳା ସିଏ ··ମାନେ · ତମର···

ମାଧବୀ

ମାମୁଁଙ୍କ ଶଳାର ପୁଅ ଅର୍ଥାତ୍ ମୋ' ମାମୁଁ ପୁଅ ଭାଇର ପିଇସୀ ପୁଅ ଭାଇ ହେଲେ ମୋର ମଧ୍ୟ···

କୃଷ୍ଣମୋହନ

ଓଃ ! ସେଗୁଡାକ ଜମ୍ବୁପୁଷ୍ପ ବ୍ରାହ୍ମଣ ଆଉ କଟକା କରଣ ଜ୍ଞାତି···
(ବିରକ୍ତ ହୋଇ ଝୁଂକପଡିଲେ ଡିସେକ୍ସନ ଟେବୁଲ ଉପରକୁ)
[ ଠିକ୍ ଏମିତି ଘରବତା ପରେ ]

### ମାଧବୀ

ସତେମ; ତମକୁ ବାହାହେଲା ଦିନଠୁ ଆମେ ଆଉ ବୋହୂବୋହୂକା ଖେଳିନୁ । ସେ ଦିନଗୁଡ଼ାକ ଖୁବ୍ ସୁନ୍ଦର ଥିଲା । (ତା ପରେ ସ୍ୱପ୍ନ ଦେଖିଲା ଭଳି) ସମୟଗୁଡ଼ାକ ବେଶ୍ ସୁନ୍ଦର କଟି ଯାଉଥିଲା… ଖରାବେଳେ ଘରେ ସମସ୍ତେ ଶୋଇ ପଡ଼ିଲେ ଯେତେବେଳେ ସବୁ ନିର୍ଜନ ହୋଇଯାଏ···ଆମେ ଲୁଚି ଲୁଚି ଗ୍ୟାରେଜ୍ ଭିତରକୁ ଚାଲିଯାଉ ! ଆମ୍ରେକନ କାର୍ ଭିତରକୁ ଗଳିପଡ଼ୁ ଆମେ ଦି' ଜଣ ଆଉ ବୋହୂବୋହୂକା ଖେଳୁ···ଖୁବ୍ ଗରମ, ଝାଳ…ଟିକଏ ଟିକଏ ପବନ ଭିତରେ ପେଟ୍ରୋଲ୍ ଆଉ ଡିଜେଲ୍ ଗଂଧ···ଆଃ…(ଆଖି ପ୍ରାୟ ବୁଜି ହୋଇଗଲା)

### କୃଷ୍ଣମୋହନ

ଓଃ ! ଷ୍ଟୁପ ଇଡ୍ ! ତମେ ମୋ' ଗବେଷଣାରେ ଡିଷ୍ଟର୍ବ କରୁଛ !

### ମାଧବୀ

ଗବେଷଣା ନା ଛେନା ମ ?

### କୃଷ୍ଣମୋହନ

ହଁ । ତମଲାଗି ମୋ' ଗବେଷଣା ଏଗାର ବର୍ଷ ହେଲା ଫେଲ ମାରୁଛି ।

### ମାଧବୀ

ଏମିତି ପର ଉପରେ ଦୋଷ ଲଦି ଲଦି ତମେ ନିଜ ଦୁର୍ବଳତାକୁ ଲୁଚେଇବାକୁ ଚେଷ୍ଟା କରୁଚ ।

### କୃଷ୍ଣମୋହନ

କ'ଣ କହିଲ ?

### ମାଧବୀ

ମୁଁ ଏମିତି ଗବେଷଣାକୁ ଘୃଣା କରେ । ଗବେଷଣା କରିବ ବୋଲି ଗୋଟାଏ ସ୍ତ୍ରୀ ବାହା ହେଇଚ ବୋଲି ଏକାବେଳେ ଭୁଲିଯିବ ? ଯେତେବେଳେ ଦେଖ ଏଇ ଟେବୁଲ ଉପରେ ବସି ଖାଲି ବେଙ୍ଗ କଟା ?

।। ବାଉ ।।

କୃଷ୍ଣମୋହନ

(ହସି) ଅଚ୍ଛା ମାଧବୀ, ମୋର ଗୋଟାଏ ପ୍ରଶ୍ନ ।

ମାଧବୀ

କ'ଣ ? ପ୍ରଶ୍ନ କ'ଣ ? ମୁଁ କ'ଣ ତମ ଗ୍ରାହକ ?

କୃଷ୍ଣମୋହନ

ନାଇଁ । ସେ କଥା ନୁହେଁ । ତେବେ···ତମେ ସତରେ କ'ଣ ମୋ' ବେଙ୍ଗ ଗବେଷଣାକୁ ଘୃଣା କରୁଚ ମାଧବୀ ?

ମାଧବୀ

ବାହାର ପୃଥିବୀଠାରୁ ନିଜକୁ ଦୂରେଇ ଦେଇଥିବା ଜୀବନକୁ ମୁଁ ଘୃଣା କରେ ।ଏମିତି ସମ୍ପର୍କହୀନ ଜୀବନକୁ ମୁଁ ଘୃଣା କରେ ।

କୃଷ୍ଣମୋହନ

ନା । ମିଛକଥା । ତମେ ବି ଏ ଗବେଷଣାକୁ ଭଲପାଅ ।

ମାଧବୀ

ନା ।

କୃଷ୍ଣମୋହନ

ହଁ ।

ମାଧବୀ

ନା ।

କୃଷ୍ଣମୋହନ

(ଜବରଦସ୍ତ) ହଁ ।

ମାଧବୀ

(ଆହୁରି ଜୋର୍‌ରେ) ନା । ମୁଁ ଏଇ ବେଙ୍ଗମାନଙ୍କୁ ଘୃଣା କରେ । ତମକୁ ଏବଂ ତମ ଗବେଷଣାକୁ ମଧ୍ୟ···

କୃଷ୍ଣମୋହନ

ନା ।

॥ ତେର ॥

ମାଧବୀ

ହଁ ।

କୃଷ୍ଣମୋହନ

(ଚିତ୍କାର କରି) ନା, ନା, ନା । ତମେ ଏଇ ଗବେଷଣାକୁ ଭଲପାଅ ବୋଲି ମତେ ବାଧା ଦେଉଥିଲ···ଏଇ ବେଂଗମାନଂକୁ ଭଲପାଅ ବୋଲି ଏତେ ଆଦରରେ ସେମାନଂକୁ ପୋଷିଛ ଏବଂ ତମର ସବୁଠାରୁ ବେଶି ଲୋଭ ବେଂଗମୁଂଡରୁ ବାହାରିବା ମଣିଟି ପାଇଁ । ସେଇଥି ପାଇଁ ତମେ ଏତେଥର ଏଇ ରୁମ୍ ଭିତରକୁ ପଶି ଆସୁଛ ।

ମାଧବୀ

ପ୍ଲିଜ୍···ତମେ ଏମିତି ଚିତ୍କାର କରନି । (ପାଖକୁ ଲାଗିଯାଇ ତାଂକ ମୁଂଡକୁ ଆଉଁସି ଦେଇ) ଏମିତି ଚିତ୍କାର କରି କରି ତମେ ଦୁର୍ବଳ ହୋଇଗଲଣି । ତମେ ଟିକିଏ ବସ । ଆରାମ କର···

କୃଷ୍ଣମୋହନ

ସତରେ, ମତେ ଖୁବ କ୍ଲାନ୍ତ ଲାଗୁଚି ମାଧବୀ । କପେ ଟି' କରି ଦେଇପାରିବ ? (ଚୌକିରେ ବସିଲେ) ।

ମାଧବୀ

ଏମିତି ଟି' ଗୁଡ଼ା ପିଇ ପିଇ ତମର ସ୍ୱାସ୍ଥ୍ୟ ନଷ୍ଟ ହେଲଣି । ତମର ଟିକିଏ ବେଶି ପ୍ରୋଟିନ୍ ଖାଇବା ଉଚିତ ।

କୃଷ୍ଣମୋହନ

ଖାଉଛି ତ !

ମାଧବୀ

ଖାଲି କାର୍ବୋହାଇଡ୍ରେଟ୍ । ଷ୍ଟାର୍ଚ୍ଚ ଖାଉଚ ।

କୃଷ୍ଣମୋହନ

ତା' ହେଲେ ମତେ ଏମିତି ଦୁର୍ବଳ ଲାଗୁଚି କାହିଁକି ?

ମାଧବୀ

ଏଇଟା ତମର ମାନସିକ ଦୁର୍ବଳତା । ଏଗାର ବର୍ଷ କାଳ ଗବେଷଣାରେ ଫେଲ୍ ମାରି ମାରି ତମେ ମାନସିକ ଶକ୍ତି ହରେଇ

ବସିଲଣି । ଅନ୍ତତଃ ତମର ଟିକଏ ଟିକଏ ଦୁଧ ପିଇବା କଥା କିଂବା ଦୁଇଟା ଲେଖା ଭିଟାଭେକ୍ସ ଟାବଲେଟ୍ !

କୃଷ୍ଣମୋହନ

ଭିଟାଭେକ୍ସ ? ନାଁଟା ଶୁଣିଲା ଭଲ ମନେ ହେଉଛି ତ !

ମାଧବୀ

ହଁ । ଏଇଟା ଗୋଟାଏ ପାପୁଲର ମେଡ଼ିସିନ୍ ଯେ···

କୃଷ୍ଣମୋହନ

କିନ୍ତୁ ତମେ କ'ଣ ନିଶ୍ଚିତଭାବେ କହିପାରିବ ଯେ ଭିଟାଭେକ୍ସ ଖାଇଲେ, ପୁଣି ଥରେ ମୋର ଶକ୍ତି ଫେରିଆସିବ ?

ମାଧବୀ

ସେମିତି କହିଲେ ତ ଦୁନିଆର କୌଣସି ଜିନିଷଟା ନିଶ୍ଚିତ ନାହିଁ ! ଆମେ···ଆମର ଭବିଷ୍ୟତ୍ । ତୁମେ କ'ଣ ନିଶ୍ଚିତ ଭାବରେ କହିପାରିବ ଯେ ଏଇ ଗବେଷଣା କରି ତମେ ଶେଷରେ ବେଂଗ ମୁଂଡରୁ ମଣି ଖୋଜି ପାଇବ ?

କୃଷ୍ଣମୋହନ

ନିଶ୍ଚୟ । ବର୍ଷାରେ ପ୍ରଥମ ବୁନ୍ଦ ଏଇ ବେଂଗ ଉପରେ ପଡ଼ିଲେ ତାହା ମଣି ହୋଇଯାଏ···

ମାଧବୀ

କୋଉ ବେଂଗ ? ତମେ ତ ଏ ଭିତରେ ଅତି କମ୍ ପାଞ୍ଚ ହଜାର ବେଂଗକୁ ହତ୍ୟା କରିସାରିଲଣି !!

କୃଷ୍ଣମୋହନ

ସେଇତ ! ସେଇ ନିର୍ଦ୍ଦିଷ୍ଟ ବେଂଗଟାକୁ ମୁଁ ଖୋଜୁଛି । ତା' ହେଲେ ତମେ ଦେଖିବ ମାଧବୀ—କୋଟି କୋଟି ଟଂକାର ବୈଦେଶିକ ମୁଦ୍ରା ଆସିଯିବ । ଆମକୁ ଆଉ ଏଇ ଭଡ଼ାଘରେ ରହି ଏଇ ସାହି

ପଡ଼ିଶାଙ୍କର ଅଚ୍ଛା ତାମସା ଶୁଣିବାକୁ ହବନ । ଆମେ ଗୋଟିଏ ଶୀତ ତାପ ନିୟନ୍ତ୍ରିତ କୋଠା ଗଢ଼ିବା···ତା' ଭିତରେ ସୁନ୍ଦର ଗବେଷଣାଗାର···ତମର ଏଇ ଘରବାଲା ଆସିବ ଆଉ ଫୁଲମାଳ ଦେଇ ମତେ ସମ୍ବର୍ଦ୍ଧନା ଦେବେ···ହାଃ···ହାଃ (ନିଜ କଥାରେ ନିଜେ ଖୁସି ହୋଇଗଲେ)

## ମାଧବୀ

(ତାଚ୍ଛଲ୍ୟ) ତମେ ଟି ? ହୁଁ । ଜଣାଯାଉନି କି ?

## କୃଷ୍ଣମୋହନ

ତମେ ମୋ' ଉପରେ ବିଶ୍ୱାସ ରଖ ମାଧବୀ···ମୁଁ ଏଇ ମହତ୍ କାମଲାଗି ଜୀବନ ଉତ୍ସର୍ଗ କରିଦେଇଛି···ଆଉ ଆମ୍ଭ ନିଜ ଏବାଉଟ ଇଟ୍ !

## ମାଧବୀ

କିନ୍ତୁ ତମେ ଅଯୋଗ୍ୟ । ମୁଁ ଜାଣେ ତମ ଦେଇ କିଛି ହେବନି । ତମେ ନିଜର ଜ୍ଞାନର ସୀମାଠାରୁ ଅଧିକ ଆଶା କରୁଚ ।

## କୃଷ୍ଣମୋହନ

କର୍ମଣ୍ୟେ ବାଧିକା ରସ୍ତେ ମା ଫଳେଷୁ କଦାଚନ ।

## ମାଧବୀ

ପୁଣି ସେଇ ଆଶାବାଦୀ କଥା କହିଲ ? ମୁଁ ବୁଝିପାରୁନି ଏଗାର ବର୍ଷର ବିଫଳତା ପରେ ତମେ କେମିତି ଏଇ ଆକାଶ ମୀନାର ଗଢ଼ିପାରୁଚ ! ସାହି, ସମାଜ ସମସ୍ତେ ତମକୁ ଦୂରେଇ ଦେଲେଣି । ଅଥଚ···

## କୃଷ୍ଣମୋହନ

ନା । ମୁଁ ନିଜେ ସେମାନଙ୍କଠାରୁ ଦୂରେଇ ଯାଇଛି ।

## ମାଧବୀ

କାରଣ ତମକୁ ଭଦ୍ରତା ଆସେନା । ବାପାଙ୍କ ସାଙ୍ଗରେ ତମେ ଯେମିତି ବ୍ୟବହାର ଦେଖଉନ ଯଦି ବୀର ଭାଇଙ୍କ ଆଗରେ ସେମିତି ହୁଏ, ତାହାହେଲେ ସିଏ ତମକୁ ସିଧା ମାରି ପକେଇବେ ।

॥ ଷୋହଳ ॥

କୃଷ୍ଣମୋହନ

ଙ୍କର ଘର ? ଓଃ ! ଠିକଏ ତଳେ ତମେ ତାଂକ କଥା କହୁଥିଲ ।

ମାଧବୀ

ହଁ । ଘର ବଦ୍‌ରୀ ସିଏ !

କୃଷ୍ଣମୋହନ

ମତେ କାଇଁକି ସିଏ ମାରିବ ? (ଠିକଏ ଡରିଗଲେ)

ମାଧବୀ

ଅସାମାଜିକ ଭଳି ବ୍ୟବହାର କଲେ···

କୃଷ୍ଣମୋହନ

କାଂଭୁ ତମେ କହୁଲନି ତ ଙ୍କର ଘର କଏ ?

ମାଧବୀ

ମୋ' ମାମୁଁଙ୍କ ଲୋକ···

କୃଷ୍ଣମୋହନ

(ଘାଗିଯାଇ) ଓଃ ! ମୁଁ ପର୍ଚ୍ଛୁରୁଚ କୋଉ ହିସାବରେ ସିଏ ତମର ଘଇ ?

ମାଧବୀ

ମୁଁ କ'ଣ ଜାଣିଚ ? ପିଲାଦିନରୁ ତାଂକୁ ଙ୍କର ଘଇ ବୋଲି ଡାକି ଆସିଚ ବୋଲି···

କୃଷ୍ଣମୋହନ

ହୁଁ ।

ମାଧବୀ

ପ୍ଲିଜ୍ । ତମେ ତାଂକ ସାଂଗରେ ଠିକଏ ଭଦ୍ର ଭାବରେ ସଯତ ହୋଇ କଥାବାର୍ତ୍ତା କରିବ । କଥା ଖସିଗଲେ ସେ ଏଇଟି ଗୋଟାଏ ହଂଗାମା କରିଦେଇ ପାରନ୍ତି । ଧାଇ ପଡଶାବାଲା ଆମ ନାଁରେ ଗୁଜବ ଶୁଣିବା ପାଇଁ କାନ ପାତି ରହିଛନ୍ତି ।

॥ ସଚର ॥

କୃଷ୍ଣମୋହନ

(ବିବ୍ରତ ହୋଇ) କିନ୍ତୁ ମୁଁ ବୁଝିପାରୁନି...ଆମ ଘରେ ଆମେ ଯାହା କଲେ ସେମାନେ କାହିଁକି ଶୁଣିବେ ?

ମାଧବୀ

ଆମ ଘରଟା ପ୍ରାୟ ନିର୍ଜନ । ପୁଣି ଏଇ ଯୋଉଁ ବେଂଗ ଧରିଆଣି ପୋଷିଛ ସେଇଥି ପାଇଁ...

କୃଷ୍ଣ ମୋହନ

କିନ୍ତୁ.. ସେମାନେ ଆମ କଥା ଶୁଣିବା ପାଇଁ କାନ ଡେରି ରହିଥାନ୍ତି ବୋଲି ତମେ ଭଲ ଭାବେ ଜାଣିଚ ?

ମାଧବୀ

ହଁ । ଏମାନେ ପରା ଆଜି ଆମକୁ ଏଇ ଘରେ ରଖେଇ ଦେବେନି !

କୃଷ୍ଣମୋହନ

ସେମାନଂକୁ ଏଇଥି ପାଇଁ ମୋର ଡର । ଅତି ଆଶ୍ଚର୍ଯ୍ୟ ! ମଣିଷଗୁଡ଼ା ପରକଥା ଜାଣିବା ପାଇଁ ଏତେ ବ୍ୟସ୍ତ କାହିଁକି କେଜାଣି...କିଏ କୋଉଠି କ'ଣ କଲା ସେଥିରେ ଏମାନଂକର ମୁଂଡ ଖେଳାଇବାର କ'ଣ ଅଛି ? ମୁଁ ଏମାନଂକୁ...

ମାଧବୀ

(ଇଂଗିତ କରି ଆସ୍ତେ କହିବା ପାଇଁ ନିର୍ଦ୍ଦେଶ ଦେଇଚି) କାଂଥମାନଂକର ମଧ୍ୟ କାନ ଅଛି । ଏଇ ଦେଖୁନା, ସେପଟେ ଘରବାଲାମାନେ ସବୁ ଚୁପ୍ ଚୁପ୍ ହୋଇଗଲେଣି । ବୋଧହୁଏ ଏଇ କାଂଥ ପାଖରେ ରହି ଆମେ କ'ଣ କଥା ହେଉଚେ ଶୁଣୁଥିଲେ .. (ଫୁସ୍ ଫୁସ୍ ହୋଇ) ହୋଇ...ଶୁଣ...

( ନୀରବତା )

କୃଷ୍ଣମୋହନ

ଓଃ ! ଏଇ ନୀରବତା ମୁଁ ଆଦୌ ସହ୍ୟ କରିପାରେନି । ଏଗାର ବର୍ଷ ହେଲା ଏଇ ବେଂଗମାନଂକ ଶବ୍ଦ ଭିତରେ ରହି ରହି... (ବିରକ୍ତ ଏବଂ ହତାଶ ଜଣାଗଲେ) ।

॥ ଅଠର ॥

ମାଧବୀ

ସମସ୍ତେ କହୁଛନ୍ତି ଆମର ପିଲାଛୁଆ ହଉ ନାହାଁନ୍ତି ବୋଲି ଅମେ ବେଂଗଗୁଡ଼ାକୁ ପାଳିଛୁ ।

କୃଷ୍ଣମୋହନ

ଛାଡ଼ କ'ଣ ? ଆମେ ସେମାନଂକୁ ପାଳି ଥାଇପାରୁ । ମୁଁ ତ ସେମାନଂକୁ ବେଳେ ବେଳେ ଚୁମା ଦିଏ…ସ୍ନେହ କରେ…

ମାଧବୀ

(ମୁହଁଟା ଆଂକାବାଂକା କରି) ଇସ୍ !! ଚୁମା ଦିଅ ?

କୃଷ୍ଣମୋହନ

(ଶକ୍ତ ସ୍ୱରରେ) ସ୍ନେହ !

ମାଧବୀ

ଆଉ ପର ମୁହୂର୍ତ୍ତରେ ସେମାନଂକୁ କାଟିପକାଅ…ପାଞ୍ଚ ହଜାର ବେଂଗ…ଇସ୍ ! ତମ ହାତ ଥରି ଉଠେନି ? ସେମାନେ ପୁଣି ତ ଙ୍କବ !!

କୃଷ୍ଣମୋହନ

(ହଠାତ୍ ଆବିଷ୍କାର କଲାଭଳି) ୟୁରେକା…!! ୟୁରେକା…!!

ମାଧବୀ

କ'ଣ ୟୁରେକା ?

କୃଷ୍ଣମୋହନ

ଅନେକ ଦିନ ପରେ ମୁଁ ରହସ୍ୟ ଆବିଷ୍କାର କରିଛି ।

ମାଧବୀ

ତମେ ଆବିଷ୍କାର କରି କରି ପାଗଳ ହୋଇଯିବ ।

କୃଷ୍ଣମୋହନ

ମୁଁ ଆବିଷ୍କାର କଲି ; ତମେ ଏ ଭିତରେ ବେଂଗମାନଂକୁ ଭଲ ପାଇ ବସିଲଣି । (ଟିକଏ ପରେ) ମାଧବୀ !

॥ ଉନ୍ମେଷ ଇଶ ॥

ମାଧବୀ

କ'ଣ ?

କୃଷ୍ଣମୋହନ

ତା' ହେଲେ ଲୋକେ ଯାହା କହୁଛନ୍ତି ସତ ?

ମାଧବୀ

ଖାଲି କ'ଣ ମୁଁ ଏକା ଭଲ ପାଉଚି ? ତମେ ପାଉନ ? ସେ "ନାଇଟ୍ କୁଇନ୍"ଟାକୁ କେମିତି ଦି ବର୍ଷ ହେଲା ପୋଷିଚ ? (ଖୁସି ହୋଇ) ସତରେ ଯାହା ବ୍ୟସ୍ତ କରୁଚ ନା ସିଏ···! ଉଃ, ଗୋଟାଏ ସାକ୍ଷୀଗୋପାଳିଆ ନଡିଆ ଭଳି ଦେଖାଯାଉଚି !

କୃଷ୍ଣମୋହନ

ଆଃ···ହାଃ···ହାଃ···ଆଉ ସେ "ପିଙ୍ଗ୍ ପଙ୍ଗ୍"···ସିଏ ଏକା ଡିଆଁକେ ଟେବୁଲ ଉପରୁ ଯାଇ ବେଡ୍ରୁମ୍‌ରେ ପହଞ୍ଚିଯାଏ ? ସେଇଟାକୁ ତମେ ଭଲ ପାଅନ ?

ମାଧବୀ

ତା' ଅର୍ଥ···ଆମେ ଦୁହେଁ ବେଂଗମାନଂକୁ ଭଲ ପାଉଛୁ ।

କୃଷ୍ଣମୋହନ

(କଥାଟାକୁ ଚିଂତା କରି) ଆଇଡିଆଟା ମଂଦ ଲାଗୁନି ତ !

ମାଧବୀ

(ଚିଂତା କରି) ତମେ ସେ ଦୁଇଟାକୁ ବି ଶେଷରେ କାଟି ପକେଇବ ! (ଭୟରେ ଶିହରି ଉଠିଲେ) ।

କୃଷ୍ଣମୋହନ

(ଗବେଷକ ଭଳି), ନିଶ୍ଚୟ !

ମାଧବୀ

ମୁଁ ଜମାରୁ ଘୁଡିବନି ।

କୃଷ୍ଣମୋହନ

ହୁଁ । ତା' ହେଲେ ସେ ଦୁଇଟାକୁ ପୋଷିନିଅ !

॥ କୋଡିଏ ॥

ମାଧବୀ

( ହସି ହସି; ପିଲାଂକ ଭଳି । ) "ନାଇଟ୍ କୁଇନ୍" ଆଉ "ପିଙ୍ଗ୍ ପଙ୍ଗ୍"! ବଢ଼ିଆ···ବଢ଼ିଆ···

କୃଷ୍ଣମୋହନ

ବାପ୍ ! ଦୁଇଟି ସଂତାନ ଯଥେଷ୍ଟ ।

ମାଧବୀ

ଲାଲ୍ ତ୍ରିକୋଣ : ହିପ୍ ହିପ୍ ହୁର୍ରେ !

କୃଷ୍ଣମୋହନ

(ବଡ ପାଟିରେ) ହିପ୍ ହିପ୍···!!

ମାଧବୀ

ହୁର୍ରେ···!

କୃଷ୍ଣମୋହନ

ହିପ୍ ହିପ୍···!!

ମାଧବୀ

ହୁର୍ରେ···!!

କୃଷ୍ଣମୋହନ

(ଚିତ୍କାର କରି) ହିପ୍ ହିପ୍ !! (ନେତାମାନଂକ ଭଳି) ହୁର୍ରେ !

ମାଧବୀ

ପ୍ଲିଜ୍ ! ପାଟି କରନା···ସେମାନେ ସବୁ ଶୁଣୁଛଂତି ।

କୃଷ୍ଣମୋହନ

(ଚମକି) କିଏ ?

ମାଧବୀ

ସେମାନେ ଶୁଣୁଛଂତି ।

କୃଷ୍ଣମୋହନ

(ଫୁସ୍ ଫୁସ୍ ହୋଇ) କେମିତି ଜାଣିଲ ?

॥ ଏକୋଇଶି ॥

ମାଧବୀ

ହେଇ, ଶୁଣୁନା···ସେପଟେ ସବୁ ଶୁନ୍‌ଶାନ୍‌ ଲାଗୁଛି !!

[ ଉପରୋକ୍ତ ଅଂଶଟି ଏକ ଯାତ୍ରାପାର୍ଟି ଫାର୍ସ ଭଳି ଅଭିନୀତ ହେବା ଉଚିତ । କିନ୍ତୁ ସମ୍ଭବପର ନହେଲେ ସାଧାରଣ ଗାମ୍ଭୀର୍ଯ୍ୟ ରକ୍ଷା କରି କୁହାଯାଇପାରେ । ପରବର୍ତ୍ତୀ ଅଂଶଟି କିନ୍ତୁ ନିଶ୍ଚିତ ଭାବେ ଫାର୍ସ ଭଳି ଅଭିନୀତ ହେବ । ମାଧବୀ ବର୍ତ୍ତମାନ ଯାଇ କାନ ପାରି ବେଡ୍‌ରୁମ୍‌ କାନ୍ଥ ପାଖରେ ଠିଆହେଲେ । କୃଷ୍ଣମୋହନ ପାଦ ଚିପି ଚିପି ଗୃହଆଡକୁ ଗୁଣ୍ଠି ତାଙ୍କ ପଛପଟେ ଯାଇ ଠିଆ ହେଲେ ଏବଂ ଶୁଣିବାକୁ ଲାଗିଲେ । ]

କୃଷ୍ଣମୋହନ

କିଛି ଶୁଣୁଛ ?

ମାଧବୀ

ନା···କିନ୍ତୁ ସେମାନେ ଆମ ବିଷୟରେ କଥାବାର୍ତ୍ତା କରୁଛନ୍ତି ।

କୃଷ୍ଣମୋହନ

ଓଃ···ନିଶ୍ଚୟ । (କିଛି ସମୟ କାନ ଡେରିଥିବା ଅବସ୍ଥାରେ ଚିନ୍ତା କରି) ଆଚ୍ଛା ମାଧବୀ ? ବେଙ୍ଗମାନଙ୍କର କାନ ଅଛି ନା ନାହିଁ ? ସେମାନେ ଶୁଣିପାରନ୍ତି ?

ମାଧବୀ

ଓଃ ! ( ଶୁଣୁ ଶୁଣୁ ) ଶୁଣନ୍ତି । ଆମେ କ'ଣ ସେମାନଙ୍କ ବିରୁଦ୍ଧରେ ଷଡଯନ୍ତ୍ର କରୁଛେ ?

କୃଷ୍ଣମୋହନ

ନା' ଯେ···ତଥାପି···

॥ ବାଇଶି ॥

ମାଧବୀ

ଙ୍କୁ ଏଇ ପଡଶା ଢର ନିଶ୍ଚୟ ଶୁଣୁଛନ୍ତି...

କୃଷ୍ଣମୋହନ

(ଚିନ୍ତା କରି) ହୁଁ ।

ମାଧବୀ

(ଅଭିଷ୍ଟ ସ୍ୱରରେ) ଓଁ ! କ ଲଜ୍ଜାର କଥା···ସବୁ ତମରି ଲଗି ହଉଚି ! ତମେ ଏଗାର ବର୍ଷ ଭିତରେ ମୋ' କୋଳରେ ସନ୍ତାନଟିଏ ଦେଇପାରିଲନି···ନହେଲେ ମୁଁ ଏ ବେଂଗ ଦୁଇଟା ପୋଷିବା ପାଇଁ କାହିଁକି ବ୍ୟାକୁଳ ହୋଇ ଉଠିଥାନ୍ତି···(ସେତିକିବେଳକୁ ମାଧବୀ ଅାସି କୃଷ୍ଣମୋହନଙ୍କ ସାର୍ଟଖଣ୍ଡିକ ଚରିବା ଉପରେ ଏବଂ ତାଙ୍କ ଭୁଜିରେ ମୁଣ୍ଡ ରଖି କାନ୍ଦୁଥାନ୍ତି) ।

କୃଷ୍ଣମୋହନ

(ସ୍ୱପା ବଗ ହସ୍ତ) ଓଃ ! ଷ୍ଟପ୍ ଇଟ୍ । ସେମାନେ ଶୁଣୁଛନ୍ତି ।

ମାଧବୀ

ଶୁଣିଲେ ଅମର କ'ଣ କହିବେ ? (ସେମିତି କାନ୍ଦି କାନ୍ଦି) ମୁଁ କ'ଣ କରୁଛି ମିଛ କହୁଛି ? ଏଗାର ବର୍ଷ ଭିତରେ ତମେ ମୋତେ କ'ଣ ଦେଇଚ ?

କୃଷ୍ଣମୋହନ

(ଭାରି ଉତ୍ତେଜିତଃ ଭାବେ ଚଦଚ୍ଚରଣ କରୁ କରୁ କୌଣସି ଏକ ନିଷ୍ପତ୍ତି ନେବାପାଇଁ ମନେ ମନେ ସ୍ଥିର କରୁଥାଅନ୍ତି)

[ସ୍ୱଗତୋକ୍ତି କଂଙ୍କୁ ହେମାନେ ଯଦ୍ଦ ଅାସିପାଅନ୍ତି···There are more things in the world Horacio than dreamt of in your philosophy·· ଅଥଚ ତତ୍ ନାମ, କୁହା ଅଥଚ ମୋର ଗୋଟାଏ ଷ୍ଟାଟାସ୍ ଅଛି । ମୁଁ କୃଷ୍ଣମୋହନ ମହାପାତ୍ର· ଏମ୍· ଏସ୍ ସି·—ଅଧ୍ୟାପକ କୃଷ୍ଣମୋହନ ମହାପାତ୍ର !! ବେଂଗ ଗବେଷକ !!

॥ ତେଇଶ ॥

[ ଠିକ୍ ଏତିକବେଳେ ବାହାର ଦୁଆର ଖଟ୍ ଖଟ୍ ହେବା ଶବ୍ଦ ହେଲା ]

(ଚମକି ଉଠି) ହେଇ ! ସେମାନେ ଆସୁଛନ୍ତି···ସେମାନେ ଆସିଗଲେ···(ଭୟବିହ୍ୱଳ ହୋଇ) ବର୍ତ୍ତମାନ କ'ଣ କରିବା ?

ମାଧବୀ

କ'ଣ କରିବା ?

କୃଷ୍ଣମୋହନ

ସେମାନେ କ'ଣ ଆମକୁ ଏ ଘରୁ ନିକଳେଇ ଦେବେ ?

ମାଧବୀ

କିଛି ଆଶ୍ଚର୍ଯ୍ୟ ନୁହେ । (ପୁଣି ଥରେ କବାଟ ଖଟ୍ ଖଟ୍ କଲା)

କୃଷ୍ଣମୋହନ

ପୋଲିସ୍ ଡାକି ଆଣିବେ ? ଆଚ୍ଛା ଟିକିଏ ବୁଦ୍ଧି ଖଟାଇ କହିଲ ଦେଖି···ସେମାନେ ଆମକୁ ଡାକୁଛନ୍ତି ?

ମାଧବୀ

ତମେ କବାଟଟା ଖୋଲିଦିଅ ତ ଦେଖି···

କୃଷ୍ଣମୋହନ

(ଭୟରେ) ତମେ ଖୋଲ ।

ମାଧବୀ

ନା, ତମେ ଖୋଲ ।

କୃଷ୍ଣମୋହନ

ଓଃ ! ପ୍ଲିଜ୍ ଖୋଲ ଦିଅନା···

[ ଏଇଥର କବାଟ ଖଟ୍ ଖଟ୍ ସାଂଗରେ ଶୁଭିଲା "କୃଷ୍ଣବାବୁ"···କୃଷ୍ଣବାବୁ"··· ]

ତମେ ଖୋଲିଦିଅ ମାଧବୀ···ମୁଁ ବରଂ ସେ ବେଡ୍ ରୁମ୍‌କୁ ଲୁଚିଯାଉଛି । ଖୁବ୍, କାଓ୍ୱାର୍ଡ ! ଅଧ୍ୟାପକ ହେଇଚ; କେତୋଟା ଲୋକଂକ ସାମନାକୁ ଆସିପାରୁନ ?

§ ଚଉଦ ॥

କୃଷ୍ଣମୋହନ

ଓଃ ! ସୋ' ଫୁଏଲ୍ ! ତମେ ଏତେ ନଷ୍ଠୁର... ଏ ବିକଳ ମୁହୂର୍ତ୍ତରେ ମତେ ଅପମାନ ଦଉଚ । (ରାଗିଯାଇ) ମୁଁ ଏହି ମୁହୂର୍ତ୍ତରେ ଯାଇ କବାଟ ଖୋଲିବ । କ'ଣ ଡ଼ର ମାଡୁଛି ଭାବୁଛ ?

[ ସେ ଆଗେଇଗଲେ ଠିକଏ କଂଭୁ ଖୋଲିବା ବେଳକୁ ଡରିଗଲେ । ]

କଏ ?

ବାହାରୁ

ମୁଁ ଚଂଦ୍ରଶେଖର... କବାଟ ଖୋଲନ୍ତୁ ।

[କବାଟ ଖୋଲିଲେ ଏବଂ ବାହାରୁ ପ୍ରବେଶ କଲେ ଶ୍ରୀ ଚଂଦ୍ରଶେଖର ମହାଂତି । ପ୍ରୌଢ଼; ପାନଖାଆନ୍ତି]

ଚଂଦ୍ରଶେଖର

ଓଃ ! ଡାକି ଡାକି ତଂଟି ଶୁଖିଗଲଣି, ଗିଲାସେ ପାଣି ଆଣଂତୁ ପ୍ରଥମେ !

କୃଷ୍ଣମୋହନ

ମୁଁ...ମାନେ...(ଇତସ୍ତତଃ ହୋଇ) ନମସ୍କାର ।

ମାଧବୀ

ନମସ୍କାର ।

ଚଂଦ୍ରଶେଖର

ନମସ୍ତେ । ନମସ୍ତେ ।

କୃଷ୍ଣମୋହନ

ଆସଂତୁ । ଭିତରକୁ ଆସଂତୁ—ଆମର ଡରିବା ପାଇଁ କିଛି ନାହିଁ ଯେ...

ମାଧବୀ

ଆପଣ ମିଛରେ ଭୁଲ୍ ବୁଝୁଛଂତି ।

॥ ଘଟଣି ॥

ଚଂଦ୍ରଶେଖର

(କିଛି ବୁଝିନପାରି) ମାନେ···

କୃଷ୍ଣମୋହନ

ଆପଣମାନେ ମତେ ଅସାମାଜିକ କହିପାରଂତି···କିଂତୁ ମୁଁ··· ମତେ ବିଶ୍ୱାସ କରଂତୁ···ଏଇ ସାମାଜିକ ସହାବସ୍ଥାନରେ ମୋର ବିଶ୍ୱାସ ଅଛି। ମଣିଷ ମାନେ ମଣିଷ ପ୍ରତି ସହାନୁଭୂତିଶୀଳ ହେବା ଉଚିତ।

ମାଧବୀ

ଅପଣ ବସଂତୁ···ମୁଁ ଚେୟାର ନେଇ ଆସୁଛି।

[ ଅତି ନାଟକୀୟଭାବେ ବ୍ୟସ୍ତ ହୋଇ ଭିତରକୁ ଗଲେ ଏବଂ ଗୋଟାଏ ଟିଣ ଚେୟାର ଧରବର ହୋଇ ମାଧବୀ ଆଣିଲେ। ]

ବସଂତୁ !

ଚଂଦ୍ରଶେଖର

ହୁଁ। ଆସିଛି ଯେତେବେଳେ ନିଶ୍ଚୟ ବସିବି। ଆପଣମାନେ ଏତେ ବ୍ୟସ୍ତ ହୋଇ ପଡୁଂଛନ୍ତି କାହିଁକି ? ଆରେ···ଆରେ···ଆପଣ ନିଜେ ଚେୟାରଟା···

କୃଷ୍ଣମୋହନ

ନା, ଖାଲି ବସିଲେ କେମିତି ହବ ? ଆପଣ ଟିକିଏ ଆରାମରେ ବସଂତୁ···ମନେ କରଂତୁ ଏଇଟା ଆପଣଂକ ଘର।

ମାଧବୀ

ତମେ ବି ବେଳେ ବେଳେ ଅଜବ କଥା ସବୁ କହୁଚ। ଏଇଟା ତାଂକର ଘର ନୁହେଁ ତ ଅଉ କ'ଣ ତମ ଘର ?

ଚଂଦ୍ରଶେଖର

ଆହା, ଆପଣ କୃଷ୍ଣ ବାବୁଂକ ଉପରେ ଅଯଥା ବିରକ୍ତ ହଉଛଂତି, ବେଳେ ବେଳେ କ'ଣ ଏମିତି କଥା ଖସିଯାଏ ନାହିଁ ?

॥ ନବରଙ୍ଗ ॥

ମାଧବୀ

ଆମେ କିଂତୁ ସତରେ ଦୁଃଖିତ···ଆମେ ହୁଏତ ଆପଣଂକୁ ଉପେକ୍ଷ କରୁଛୁ ··ଅଚ୍ଛା ମୁଁ ଟିକଏ ଚା' ନେଇ ଆସୁଛି ।

କୃଷ୍ଣମୋହନ

ଆପଣଂକର ହଟ୍ ନା କୋଲ୍ଡ ?

ଚଂଦ୍ରଶେଖର

ଯେ କୌଣସିଟା ବି ଚଳିବ । (ମାଧବୀ ଭିତରକୁ ଯାଇଛି)

କୃଷ୍ଣମୋହନ

(ଚୌକିରେ ବସି) ଆପଣ ଟିକଏ ଆରାମ ହୋଇ ବସଂତୁ ନା ।

ଚଂଦ୍ରଶେଖର

ବାସ୍ତବିକ୍ ଆଇ ଏମ୍ ଫ୍ଲାଟାରଡ୍ ! ମୁଁ ଆପଣଂକର ଏଇ ଆତିଥ୍ୟରେ ଖୁସି ।

କୃଷ୍ଣମୋହନ

ଆମ ଘରଖଣ୍ଡି ପରିବାରର ··

ଚଂଦ୍ରଶେଖର

ଅଫ୍ କୋର୍ଶ ! କିଂତୁ ମୁଁ ଭାବିଥିଲି···

କୃଷ୍ଣମୋହନ

(ଚମକି) କ'ଣ ଭାବିଥିଲେ ? ପ୍ଲିଜ..ଇଫ୍ ୟୁ ଡୋଂଟ୍ ମାଇଂଡ୍··· ସଫା ସଫା କହିଦିଅନ୍ତୁ...ମୋ' ସଂପର୍କରେ···ମାନେ ଆମ ସଂପର୍କରେ ଆପଣ କ'ଣ ଭାବିଥିଲେ ?

ଚଂଦ୍ରଶେଖର

ଛାଡଂତୁ ଆଜ୍ଞା···ତିନି ଛୁଂଡରେ ଛେଳି କୁକୁର । ଲୋକଂକ କଥା ଶୁଣିଲେ ଆଉ ବଂଚ ହବ ?

କୃଷ୍ଣମୋହନ .

ୟେସ୍ ୟେସ୍ । ମୁଁ ଜାଣେ ଏଇଠି ଅନେକ ମୋ' ଗବେଷଣା ଦେଖି ଈର୍ଷା କରୁଛଂତି । ସେମାନେ ନିଶ୍ଚୟ କଥାଟାକୁ ବଢ଼େଇ

କହୁଛଂତି—ସେଇଥି ପାଇଁ ଏଗାର ବର୍ଷ ଭିତରେ ଆପଣ ଏଗାର ଥର ବି ଆମ ଘରକୁ ଆସିନାହାଂତି ।

ଚଂଦ୍ରଶେଖର

ଗୁଡଂଗୁ ! ଆମ ରବିବାରର ଏଇ ସକାଳଟାକୁ ସୁନ୍ଦର ନକରିବା କାହିଁକି ?

କୃଷ୍ଣମୋହନ

ରିଆଲି ? ମୁଁ ଠିକ୍ ଏପର୍ଯ୍ୟନ୍ତ ଏଭଳି ଜଣେ ବଂଧୁ ଖୋଜୁଥିଲି । ପାଇ ନଥିଲି । ଆପଣ ଏତେଦିନ ଯାଏଁ କୋଉଠି ଲୁଚିଥିଲେ ?

ଚଂଦ୍ରଶେଖର

ମୁଁ···ମାନେ···ଏଇ ଆପଣଂକ କଂପାଉଣ୍ଡ୍ ଭିତରେ—

କୃଷ୍ଣମୋହନ

ୟେସ୍ । ସିଓର୍ । (ହଠାତ୍) ହାଉ ସିଲ୍ଲୀ ଆଇ ଆମ୍ ? ମୁଁ ତ ଆପଣଂକୁ ଜାଣେ । ମୁଁ ଆପଣଂକୁ ଭଲଭାବେ ଚିହ୍ନେ ।

ଚଂଦ୍ରଶେଖର

ଆଜିକାଲି ଭୀଷଣ ଗରମ ହେଉଛି ।

ଭୀଷଣ ଗରମ । କଲିକତା ରେଡିଓରୁ ମୋ' ସ୍ତ୍ରୀ କୁଆଡେ ଶୁଣିଥିଲେ

କୃଷ୍ଣମୋହନ

ପୂର୍ବାଂଚଳରେ ସବୁଠୁ ବେଶି ଗରମ ଏଇଠି !

ଚଂଦ୍ରଶେଖର

ଅଚ୍ଛା ? କେତେ ଡିଗ୍ରୀ ?

କୃଷ୍ଣମୋହନ

(ଅନ୍ୟମନସ୍କ ଭାବେ) ଡିଗ୍ରୀ···ଡିଗ୍ରୀ···(ହଠାତ୍) କ'ଣ କହିଲେ ? ଉତ୍ତାପ ? ମାନେ ମୁଁ ଠିକ୍···(ମାଧବୀକୁ ବଡ଼ ପାଟିରେ) ଆଚ୍ଛା ମାଧବୀ ? ଏଇଠି ସର୍ବୋଚ୍ଚ ଉତ୍ତାପ କେତେ ବୋଲି ଶୁଣିଥିଲ ?

॥ ଅଠେଇଶ ॥

ଚଂଦ୍ରଶେଖର

(ଟିକଏ ଅପେକ୍ଷା କଲେ । ମାଧବୀଠାରୁ କୌଣସି ଉତ୍ତର ନପାଇ) ହୁଉଂଭୁ ! ଏମିତି ବ୍ୟସ୍ତ ହେବା ଦରକାର ନାହିଁ । କେତେ ଗୋଟାଏ ହୋଇଥିବ ! ମନେ କରନ୍ତୁ ୧୧୮ ଡିଗ୍ରୀ କିଂବା ୧୩୦ ଡିଗ୍ରୀ···

କୃଷ୍ଣମୋହନ

ମୋର ସ୍ତ୍ରୀ···ବର୍ତୁଳାଟି ଘରଏକୁଟିଆ···ଆଚ୍ଛା, ଆପଣ ଆପଣଙ୍କ ସ୍ତ୍ରୀଙ୍କୁ ନେଇ ଆସିଲେନି ? (ଟିକଏ ହସି) ମୋ' କହିବା ଅର୍ଥ ସେ ଦୁହେଁ ବି କିଛି ସମୟ ଗପିଥାଆନ୍ତେ !

ଚଂଦ୍ରଶେଖର

ସେ ଆଜି କାହାର ଗୋଟାଏ ବାହାଘର ଆଟେଂଡ କରି ଯାଇଛନ୍ତି ।

କୃଷ୍ଣମୋହନ

ଆପଣଙ୍କ ସ୍ତ୍ରୀ···ମାନେ ··ସେଇ ମୋଟି ହେଇ ଯିଏ···

ଚଂଦ୍ରଶେଖର

(ଅପ୍ରତିଭ ହେଲେ) ହଁ । ସେ ଟିକଏ ମୋଟି···ବୟସ ହେଲେ ସ୍ତ୍ରୀମାନେ ଟିକଏ···

କୃଷ୍ଣମୋହନ

ଫ୍ୟାଟ୍ ବଢ଼ିଯାଏ···କିଂଭୁ ମୁଁ ଥରେ ମାର୍କ କରିଛି ଆପଣଂକର ସ୍ତ୍ରୀଙ୍କର ବଡଟା ଠିକ୍ ମାପିଲା ଭଳି ନୁହେଁ । ମାନେ ଅଂଟାଠାରୁ ଯଦି ଦେହକୁ ଠିକ୍ ଦୁଇ ଭାଗରେ ବିଭକ୍ତ କରାଯାଏ··ତା' ହେଲେ ତଳ ଅଂଶଟା ବେଶି ଖାଦ୍ୟ ଗ୍ରହଣ କରୁଛି···!

ଚଂଦ୍ରଶେଖର

(ବାଧା ଦେଇ) ଥାଉ । କାହାର ଅନୁପସ୍ଥିତିରେ କିଛି କହିବା ଆଦୌ ସମୀଚୀନ ନୁହେଁ । ଭଦ୍ରୋଚିତ ମଧ୍ୟ ।

କୃଷ୍ଣମୋହନ

କିଂଭୁ ଆପଣଙ୍କ ସ୍ତ୍ରୀ ମୋଟି ନିଶ୍ଚୟ ।

॥ ଅଣଛରଣି ॥

ଚଂଦ୍ରଶେଖର

(ଈଷତ୍ ବିରକ୍ତ) ହଁ ।

କୃଷ୍ଣମୋହନ

ଆପଣ ଅନ୍‌କଂଫର୍‌ଟେବଲ୍ ଦେଖାଯାଉଛଂନ୍ତି ଯେ···? ମନେ ଆପଣଂକର ପାଇଲସ୍ ଫାଇଲସ୍ କଛୁ ଅଛୁ ?

ଚଂଦ୍ରଶେଖର

(ଆଶ୍ଚର୍ଯ୍ୟ ହୋଇ) ନା ।

କୃଷ୍ଣମୋହନ

ଆଚ୍ଛା···ଏଇ ନୂଆ ମନ୍ତ୍ରିମଂଡ଼ଳ ସଂପର୍କରେ ଆପଣଂକର ମତ କ'ଣ ?

ଚଂଦ୍ରଶେଖର

ମୁଁ ପଲିଟିକ୍‌ସ୍‌କୁ ଘୃଣା କରେ ।

କୃଷ୍ଣମୋହନ

ଅଇ ଏମ୍ ସରି । ଆପଣ ମୋ' କଥାରେ ବୋର୍ ହେଉନାହାନ୍ତି ତ ?

ଚଂଦ୍ରଶେଖର

(ଭଦ୍ରଭାବରେ) ନା—ନା । ଆଦୌ ନୁହେଁ । ରାଦର୍ ଆଇ ଏମ୍ ଫ୍ଲାଟରଡ୍ ।

କୃଷ୍ଣମୋହନ

ପିଲାଛୁଆ କେତୋଟି ?

ଚଂଦ୍ରଶେଖର

ଗୁଡ଼ସେଟି !

କୃଷ୍ଣମୋହନ

ଓଃ ! ଝୁ ମର୍ !

॥ ଭିରୂଷ ॥

ଚଂଦ୍ରଶେଖର

(ଟିକଏ ନୀରବତା ପରେ) ଆଉ କୁହନ୍ତୁ ଆପଣଙ୍କ ଖବର କ'ଣ ?

କୃଷ୍ଣମୋହନ

ସେ'···ସେ' । ହଁ । କହିଲେନ ଯେ ଆପଣଙ୍କର ପୁଅ କେତୋଟି ଆଉ ଝିଅ କେତୋଟି !

ଚଂଦ୍ରଶେଖର

ଝିଅ ଦୁଇ । ପୁଅ ଦୁଇ ।

କୃଷ୍ଣମୋହନ

ଇଂପସିବଲ୍ । ବଟ୍, ହାଉ ?

ଚଂଦ୍ରଶେଖର

କାହିଁକି ?

କୃଷ୍ଣମୋହନ

ଅପଣ ଏମିତି ଇକ୍ୟୁଲିବ୍ରିୟମ୍ କେମିତି ରଖିପାରିଲେ ? ମାନେ ଠିକ୍ ହିସାବ କଲାଭଳି କେମିତି ପୁଅ ଆଉ ଝିଅ ଜନ୍ମ ହେଲେ ? ଅପଣ ଆଗରୁ କହୁଛି···

ଚଂଦ୍ରଶେଖର

ନା । ସେଇଟା ଭଗବାନଙ୍କ ହାତରେ ।

କୃଷ୍ଣମୋହନ

ଭଗବାନ୍ ? (ଯେମିତି ସେ ନୂଆ ଶବ୍ଦଟେ ଶୁଣିଲେ ! ) କିନ୍ତୁ··· (ହସିଦେଇ) ଯା' ହେଉ, ଅପଣଙ୍କ ସ୍ତ୍ରୀ ଟିକଏ ମୋଟି ।

ଚଂଦ୍ରଶେଖର

(ହସିଯାଇ) ହଁ । ମୋ' ସ୍ତ୍ରୀ ମୋଟି, ସେଇଠୁ···ସେଥିରେ··· ଅପଣଙ୍କର କାହିଁକି ମୁଣ୍ଡ ବ୍ୟଥା ହେଉଛି !

କୃଷ୍ଣମୋହନ

(ଚଂଦ୍ର ବାବୁଙ୍କ କଥା ନଶୁଣି) ଅଚ୍ଛା ନି···ଅପଣଙ୍କ ନାଆଁଟା···

॥ ଏକତିରିଶ ॥

ଚଂଦ୍ରଶେଖର

ଚଂଦ୍ରଶେଖର ମହାଂତି ।

କୃଷ୍ଣମୋହନ

ଏମିତି ଟିକଏ ଟିକଏ ଭୁଲ୍ ହେଇଯାଉଚ...ପ୍ଲିଜ୍ ଡୋଂଟ୍ ଥିଂକ୍ ଅଦର୍‌ୱାଇଜ୍ ! ଆଚ୍ଛା ଚଂଦ୍ରଶେଖର ବାବୁ ! ଶୁଣିଛି ସ୍ତ୍ରୀମାନେ ମୋଟି ହେଲେ ଲେବର୍ ପେଇନ୍ କୁଆଡେ କମ୍ ହୁଏ ! ଇଜ୍ ଇଟ୍ ଟ୍ରୁ ?

ଚଂଦ୍ରଶେଖର

ହ୍ୱାଟ୍ ନନ୍‌ସେନ୍‌ସ୍ ! (ଭୀଷଣ ରାଗିଯାଇଥାଂତି)

[ କିଛି ସମୟ ଉଭୟେ ଚୁପ୍‌ଚାପ୍ ବସିଲେ । ତା' ପରେ କୃଷ୍ଣମୋହନଙ୍କ ପାଟିରୁ କଥା ବାହାରିଲା ! ]

କୃଷ୍ଣମୋହନ

(କିଛି ହିସାବ କରି ଯେମିତି ପାଉନାହାଂତି)
ଅଚ୍ଛା, ଦୁଇ ପ୍ଲସ୍ ଦୁଇ...ଚାରି ତ ?

ଚଂଦ୍ରଶେଖର

ନିଶ୍ଚୟ ।

କୃଷ୍ଣମୋହନ

ଦୁଇ ଗୁଣନ ଦୁଇ ?

ଚଂଦ୍ରଶେଖର

(ହସିଲେ) ଚାରି ।

କୃଷ୍ଣମୋହନ

କାହିଁକି ?

ଚଂଦ୍ରଶେଖର

ଅଦ୍ଭୁତ ପ୍ରଶ୍ନ !

॥ ଦ୍ୱାଦଶ ॥

କୃଷ୍ଣମୋହନ

(ସ୍କିଜୋଫ୍ରେନିଆ ହେଲାଭଳି)

ଆପଣଂକ ଦୁଇ ଝିଅ ଏବଂ ଦୁଇ ପୁଅଂକୁ ମିଶାଇଲେ ଯଦି ମୋଟ ଚାରି ହୁଏ...ତେବେ ଗୋଟିଏ ପୁଅ ଏବଂ ତିନୋଟି ଝିଅ...ନା— ତେବେ ଗୋଟିଏ ଏବଂ ଗୋଟିଏ ମାନେ ଗୋଟିଏ ପୁଅ ଏବଂ ଗୋଟିଏ ଝିଅ=ଦୁଇ। ଗୋଟିଏ ପୁଅ ଏବଂ ଦୁଇଟି ଝିଅ...ନା, ମାନେ ଦୁଇଟି ଝିଅ ଏବଂ ଗୋଟିଏ...ନା, ଦୁଇଟି ପୁଅ ଅର୍ଥାତ୍ ଯଦି ଦୁଇଟି ଝିଅ ଏବଂ ଦୁଇଟି ଝିଅର ଗୁଣନ କ'ଣ ଚାରି ହୋଇପାରିବ ? ଅର୍ଥାତ୍ ତିନୋଟି ଝିଅ ଏବଂ ଗୋଟିଏ ପୁଅର ଗୁଣନ ଚାରି ନ ହୋଇପାରେ। କିଂତୁ ଗୋଟିଏ ପୁଅ ଏବଂ ତିନୋଟି ଝିଅ ଯଦି ଆପଣଂକର ଥାଆଂନ୍ତି ତା' ହେଲେ ବି ମୋଟସଂଖ୍ୟା ଚାରି ହୋଇପାରିଂବ। ହାଉ ଷ୍ଟ୍ରେନ୍‌ଜ୍ !

ଚଂଦ୍ରଶେଖର

ଆପଣ ଗଣିତ ଅଧ୍ୟାପକ ?

କୃଷ୍ଣମୋହନ

ନା, ମୁଁ ଏମ୍.ଏସ୍‌ସି. ଜୁ'-ଲୋଜି...ପ୍ରାଣୀ ବିଜ୍ଞାନ। ଆପଣ କ'ଣ ଗୃହାଂତ୍ତ ଏଗାର ବର୍ଷ ହେଲା...

ଚଂଦ୍ରଶେଖର

(କଥା ଛଡାଇ) ଏଗାର ବର୍ଷ କହିବାରୁ ଠିକ୍ ମନେପଡିଲା। ଆପଣ ଆମ ଘରେ ଭଡା ରହି ପ୍ରାୟ ଏଗାର ବର୍ଷ ହୋଇଗଲା, ନୁହେଁ ?

କୃଷ୍ଣମୋହନ

ଯେତେବେଳେ ଆପଣଂକ ସ୍ତ୍ରୀ ଏତେ ମୋଟି ନଥିଲେ...କିଂତୁ ଏଇ ଏଗାର ବର୍ଷ ଭିତରେ...

ଚଂଦ୍ରଶେଖର

ଓଃ ! ଆଜି ରବିବାରଟା ଆପଣ ନଷ୍ଟ କରିଦେଲେ।

॥ ତେଇଶ ॥

କୃଷ୍ଣମୋହନ

ଭୀଷଣ ଗରମ । ମୋ' ସ୍ତ୍ରୀ ଗତକାଲି ରେଡିଓରୁ ଶୁଣିଥିଲେ...(ବଡ ପାଟିରେ ମାଧବୀଙ୍କୁ) ମାଧବୀ...ଗତକାଲି କେତେ ଡିଗ୍ରୀ ଉତ୍ତାପ ଥିଲି ?

ଚଂଦ୍ରଶେଖର

ମୁଁ ଠିକଏ ଚଳେ କହୁଥିଲି ନା ୧୧୮ ନହେଲେ ୧୩୦ ଡିଗ୍ରୀ ହବ ବୋଲି ?

କୃଷ୍ଣମୋହନ

ଓଃ ! ଆଇ ଏମ୍ ସରି (ହିମାଚ ହେଇଗଲେ, ହଠାତ୍ ଭୁଲ କରିଥିବା ବାଧି ଗୁଝି ଭଳି) । (କିଛି ସମୟ ଗୁମ୍ ମାରି ବସିଲେ ଓ ତା ପରେ) ହୁଁ । ଆପଣଂକର ତା' ହେଲେ ସବମୋଟ ଗୃଟୋଟି ସଂତାନ ?

ଚଂଦ୍ରଶେଖର

(ହିଦ୍ରୁପ କଲାଭଳି) ଆଜ୍ଞା !

କୃଷ୍ଣମୋହନ

ଆପଣ ଫାମିଲି ପ୍ଲାନିଂ କଲେଣି ?

ଚଂଦ୍ରଶେଖର

ଆଜ୍ଞା, ନା ।

କୃଷ୍ଣମୋହନ

ସରକାର କେତୋଟି ସଂଖ୍ୟା ନିର୍ଣ୍ଣୟ କରିଛନ୍ତି ?

ଚଂଦ୍ରଶେଖର

ଦୁଇଟି ସଂତାନ ଯଥେଷ୍ଟ । ତିନୋଟିରୁ ଆଦୌ ଅଧିକ ନୁହେ ।

କୃଷ୍ଣମୋହନ

ତିନୋଟିରୁ ଆଦୌ ଗୋଟିଏ ଅଧିକ ନୁହେ । କିଂଭୁ ମିଷ୍ଟର୍...ମିଷ୍ଟର୍...(ନାଁଟି ମନେ ପକାଇ) ଚଂଦ୍ରଶେଖର ବାବୁ, ଆପଣଂକ

ସ୍ତ୍ରୀ ଏଇ ଏଗାର ବର୍ଷ ଭିତରେ ଏତେ ମୋଟି କପର ହେଲେ ମୁଁ ବୁଝିପାରୁନ । ଏନ ୱେ, (ପୁଣି ମନେ ମନେ) ଦୁଇଟି ସଂତାନ ଯଥେଷ୍ଟ...“ନାଇଚ୍ କୁଇନ୍” ଆଣ୍ଡ୍ “ପିଙ୍ଗ୍ ପଙ୍ଗ୍” ।

ଚଂଦ୍ରଶେଖର

ସେ ଦୁଇଟି ପୁଣି କଏ ?

କୃଷ୍ଣମୋହନ

ଆମର ଆଡପ୍‌ଟେଡ୍ ଚିଲ୍‌ଡରେନ୍ । ପୋଷ୍ୟପୁତ୍ର ଦୁଇଜଣ ।

ଚଂଦ୍ରଶେଖର

ଆଚ୍ଛା ? ଆପଣ ଦୁଇଟି ପୁଅଂକୁ ପୋଷ୍ୟପୁତ୍ର କରିଛଂତି ? ଭେରି ଗୁଡ୍ । (ସନ୍ଦେହ କରି) କିଂତୁ...ଆପଣଂକ ଘରେ ସେମାନଂକୁ କେବେ ଦେଖିଲି ଭଳି ମନେ ହେଉନି ତ !

କୃଷ୍ଣମୋହନ

ନା...ମାନେ...ସେମାନେ ଠିକ୍ ପୁଅ ନୁହଂନ୍ତି ।

ଚଂଦ୍ରଶେଖର

ଠିକ୍ ପୁଅ ନୁହଂନ୍ତି ମାନେ ? ଭୁଲ ପୁଅ ?

କୃଷ୍ଣମୋହନ

ବେଶ୍ । ଅପଣ ସେମିତି ଖବରପାଉଂନ୍ତି । ବଟ୍ ହାଉ ଷ୍ଟ୍ରେନ୍‌ଜ୍ ! ଏଗାର ବର୍ଷ ଭିତରେ ବାଲି କୃଷ୍ଣମୋହନ ମହାପାତ୍ରଂକୁ ଆପଣ ଏଯାଏଁ ଚିହ୍ନି ପାରିନାହାଂନ୍ତି କେମିତି ? ଆପଣ କେମିତି ଜାଣିନାହାଂନ୍ତି ମୁଁ କୁକୁରମାନଂକୁ ନେଇ ଗବେଷଣା କରୁଛି ବୋଲି ?

ଚଂଦ୍ରଶେଖର

କାରଣ ଆପଣ କାହା ସହିତ ସମ୍ପର୍କ ସ୍ଥାପନ କରିନାହାଂନ୍ତି ।

କୃଷ୍ଣମୋହନ

ସିଓର୍ ! ହୋଇପାରେ । କାରଣ ମୁଁ ହଠାତ୍ ବୋର୍ ହୋଇଯାଏ । ତଥାପି...ଯା' ହେଉ; ଆଜି ଏକ ଶୁଭ ଦିବସ । ଏକ ରେଡ୍

॥ ପଂଚତିରିଶ ॥

ଲେଟରଡ଼୍ ତ୍ତେ' ହୋଇପାରେ । ଆପଣ ବର୍ତ୍ତମାନ ମୋ' ଲବୋରେଟିରିରେ···

ଚଂଦ୍ରଶେଖର

ଆଚ୍ଛା ? (ବିସ୍ମିତ ହୋଇ) ଏଇଟା ଆପଣଂକର ଲବେର୍‌ଟାଂଗ ?

କୃଷ୍ଣମୋହନ

ଏବଂ ମୁଁ ଗବେଷଣା କରୁଛି ବେଂଗ ଓ ତାର ମଥାରେ ଥିବା 'ମଣି' ଉପରେ । ଗୋଟିଏ ରକମର ବେଂଗ ଅଛଂନ୍ତି ଯେଉଁମାନଂକ ମୁଂଡରେ ଆଷାଢ଼ର ପ୍ରଥମ ବର୍ଷା ବୁନ୍ଦା ପଡ଼ି ତାହା 'ମଣି' ହୋଇଯାଏ । ମୁଁ ସେଇ ନିର୍ଦ୍ଦିଷ୍ଟ ବେଂଗ ଓ ମଣି ଖୋଜୁଛି ।

ଚଂଦ୍ରଶେଖର

ଆଶ୍ଚର୍ଯ୍ୟ !

କୃଷ୍ଣମୋହନ

ଏବଂ ସବୁଠାରୁ ସିକ୍ରେଟ୍‌ ଦୁଇଟି ବଡ଼ ବଡ଼ ବେଂଗଙ୍କୁ ମୋ' ସ୍ତ୍ରୀ ପୋଷିଛଂନ୍ତି । ସେମାନଂକର ନାଁ ହେଲା 'ନାଇଟ୍ କୁଇନ୍' ଓ 'ପିଙ୍ଗ୍ ପଙ୍ଗ୍' !

ଚଂଦ୍ରଶେଖର

ବେଂଗ ଦୁଇଟାକୁ ପୋଷିଛନ୍ତି ?

କୃଷ୍ଣମୋହନ

(ଗର୍ବର ସହିତ) ୟେସ୍ !

ଚଂଦ୍ରଶେଖର

କାହିଁକି ? ବେଂଗ କ'ଣ ଏକ ଗୃହପାଳିତ ପଶୁ ?

ଚଂଦ୍ରଶେଖର

ନ ହୋଇପାରେ । କିଂତୁ···କାହିଁକି ନ ହେବ ?

॥ ଛତିଶ ॥

ଚଂଦ୍ରଶେଖର

ଦେଖଂତୁ କୃଷ୍ଣମୋହନ ବାବୁ, ଆପଣ ଏମିତି ବେଂଗ ପୋଷିଛଂତି ବୋଲି ମୋ' ପାଖକୁ ଅନ୍ୟ ଭଡ଼ାବାଲ୍‌ଂକଠାରୁ କଂପ୍ଲେନ୍ ଆସୁଛି ।

କୃଷ୍ଣମୋହନ

କାହିଁକି ? ସେମାନେ କେମିତି ଜାଣିଲେ ? ଜାଣିଲେ ମଧ୍ୟ କଂପଲେନ୍ କଲବାଲା ସେମାନେ କିଏ ? ଆଇ ଆମ୍ ଏଟ୍ ମାଇ ଡିସ୍‌ପୋଜାଲ୍ !

ଚଂଦ୍ରଶେଖର

ସେ ଯିଏ ହୁଅଂତୁ ନା କାହିଁକି, ବେଂଗ ପୋଷିବାଟା ଏକ ସୋସିଅଲ୍ ନୁଇସାନ୍‌ସ୍ !

କୃଷ୍ଣମୋହନ

କେମିତି ? ଆପଣ କିଛି ପ୍ରମାଣ ଦେଇପାରିବେ ?

ଚଂଦ୍ରଶେଖର

ପ୍ରଥମ କଥା ହେଲା ଆପଣଂକ ବେଂଗମାନେ ବର୍ଷା ହେଉ କିଂବା ନହେଉ ରାତିରେ ଅତି କଦର୍ଯ୍ୟ ଭାବରେ କୁଆଁକେ ଚିତ୍କାର କରୁଛଂତି । ଫଳରେ ଏଇଠି ଏକଲା ରହୁଥିବା ପୁରୁଷ ଓ ଭଦ୍ର ମହିଳାମାନଂକର ଡିସ୍‌ଟରବେନ୍‌ସ ହେଉଛି ।

କୃଷ୍ଣମୋହନ

କିଂତୁ ଡିସ୍‌ଟର୍‌ବଡ୍ ହେବା ସେମାନଂକର ଦୋଷ । ମୋ' ବେଂଗମାନଂକର ନୁହେଁ !

ଚଂଦ୍ରଶେଖର

ଦ୍ୱିତୀୟ କଥା ହେଲା ବେଂଗ ରହିଲେ ସାପଂକର ପ୍ରାଦୁର୍ଭାବ ବଢ଼ିଯାଏ ।

॥ ଯଠଷରଣ ॥

କୃଷ୍ଣମୋହନ

ୟେସ୍ । ଏଇଟା ଗୋଟାଏ ଭାବିବା କଥା । ସିଓର୍ । ଆପଣ ମତେ ଗୋଟାଏ ପଏଂଟ୍ ଯୋଗେଇ ଦେଇଗଲେ । ସାପ ବେଂଗକୁ ଗିଳିପକାଏ ନା ?

ଚଂଦ୍ରଶେଖର

ସେଇଁଥି ପାଇଁ ତ···

କୃଷ୍ଣମୋହନ

ତେବେ ଆପଣ କୁହଂତୁ ବେଂଗ ଗିଳି ଯଦି ସାପ ମୁଂଡରୁ ମଣି ବାହାରିଲା, ତା’ ହେଲେ ସେଇଟା ସେ ବେଂଗର ମଣି କାହିଁକି ନହେବ ? ମୁଁ ଭାବୁଚି ସାପ ବେଂଗକୁ ଗିଳିଲା ବେଳେ ତାର ମଣିଟା ମୁଂଡରେ ରହିଯାଏ ଏବଂ ବେଂଗଟା ପେଟ ଭିତରକୁ ଚାଲିଯାଏ । ଆପଣ କ’ଣ କହୁଛଂତି ?

ଚଂଦ୍ରଶେଖର

ମୁଁ କହୁଚି ବେଂଗ ପେଷିବାଟା ଗୋଟାଏ ସୋସିଆଲ୍ ନୁଇସାନ୍ସ୍ । ଆପଣଂକୁ ସମସ୍ତେ ଦିଆଗଲା । ଆପଣ ଏ ଘର ଛାଡ଼ି ଦେଇପାରଂତି, ନଚୁବା ଏ ବେଂଗମାନଂକୁ !!

କୃଷ୍ଣମୋହନ

କିଂତୁ ଆପଣ ଶିକ୍ଷିତ ! ଗବେଷଣାର ମୂଲ୍ୟ ବୁଝଂତି ।

ଚଂଦ୍ରଶେଖର

ତା’ ସତ । କିଂତୁ ଆମକୁ ସମାଜରେ ବଂଚିବାକୁ ହେଲେ କେତେଟା ସୀମା ମାନିବାକୁ ହେବ ।

କୃଷ୍ଣମୋହନ

ଦ୍ୟାଟ୍ସ୍ ହ୍ୱାଇ, ଆଇ ହେଟ୍ ୟୋର୍ ସୋସାଇଟି । ମୁଁ ସବୁ ସୀମା ଲଂଘନ କରିବାକୁ ଚାହେଁ । ବେଂଗ କହେ ବେଂଗୁଲୀ ଲେ ପୃଥ୍ୱୀ ଘଡ଼ି ଘଡ଼ିକେ ଆନ । ଏଇ ଅନିଶ୍ଚିତତା···ଜୀବନର ଏଇ ଦାୟୁମାୟୁ

॥ ଅଠତିରିଶ ॥

ନିରର୍ଥକତା ବିରୁଦ୍ଧରେ ମୁଁ ସଂଗ୍ରାମ କରିବାକୁ ଚାହେଁ···ଆଉ ସେଇ ଯୁଦ୍ଧ ଭିତରେ ମୁଁ ଆପଣମାନଙ୍କର ସେଇ ଭଗବାନ ଗଢ଼ା ସବୁ ସୀମାକୁ ଭାଙ୍ଗିବି·· ମୋର କାହାରି ଉପରେ ବିଶ୍ୱାସ ନାହିଁ··· ନୋ' ଫେଇଥ୍ ଇନ୍ ଏନି ଆବ୍‌ସୋଲ୍ୟୁଟ୍ । କେବଳ ମୋର ପାଇଁ ମୁଁ ବଞ୍ଚିଛି ଆଉ ବୋହି ଚାଲିଛି ଏକ ସଂଜ୍ଞାହୀନ, ଉଦ୍ଦେଶ୍ୟହୀନ ସମୟ ଓ ଅନ୍ତଶ୍ୱଷର ବୋଝ···

[ ନେତାଙ୍କ ଭଳି ଏଇ ଭାଷଣ ଦେଲାବେଳେ କୃଷ୍ଣବାବୁଙ୍କ ନାକପୁଡ଼ା ଫୁଲି ଉଠିଲା ଏବଂ ସେ ଘନଘନ ନିଶ୍ୱାସ ନେବାକୁ ଲାଗିଲେ । ]

ଚନ୍ଦ୍ରଶେଖର

ନା । ଆପଣ ଏମିତି ଉତ୍ତ୍ୟକ୍ତ ହୋଇ ଉଠୁଛନ୍ତି କାହିଁକି ? ଆପଣଙ୍କୁ ମାନିବାକୁ ପଡ଼ିବ ଏଇଟା ଅସାମାଜିକ କାମ ।

କୃଷ୍ଣମୋହନ

କାହିଁକି ମାନିବି ? ହ୍ୟାଁ ? ଆପଣ ମୋର ବ୍ୟକ୍ତିଗତ ବ୍ୟାପାରରେ ନାକ ପୂରାଉଛନ୍ତି !!

ଚନ୍ଦ୍ରଶେଖର

କିନ୍ତୁ ବେଙ୍ଗକୁ ମୋର ଅନ୍ୟାନ୍ୟ ଭଡ଼ାଟିଆମାନେ ଘୃଣା କରୁଛନ୍ତି ।

କୃଷ୍ଣମୋହନ

(ଅତିଶୟ ବିବ୍ରତ ହୋଇ) ଓଃ ! ମୁଁ ଜାଣେ ଏମାନେ ମତେ ଶାନ୍ତିରେ ବଞ୍ଚିବା ପାଇଁ ଦେବେନି । କିନ୍ତୁ ବେଙ୍ଗମାନଙ୍କୁ ଭଲପାଏ । ଆଇ ଲଭ୍ ଦେମ୍···ଆଇ କିସ୍ ଦେମ୍···

ଚନ୍ଦ୍ରଶେଖର

(ଖୁବ୍ ବଡ଼ ପାଟିରେ ହସିଲେ)

॥ ଉତ୍ତୋଳନ ॥

କୃଷ୍ଣମୋହନ

(ଭ୍ରୂକୁଞ୍ଚିତ କରି) ଅର୍ଥାତ୍ ? ଆପଣ ବି ଏକ ବଡ଼ ରସିକ ବୋଲି ମୁଁ ଭାବିଲି । କିନ୍ତୁ ଚୀନ ଦେଶରେ ବେଂଗମାନଙ୍କୁ ଖାଆନ୍ତି । ଏମିତିକି ନାଗାଲ୍ୟାଣ୍ଡରେ ମଧ୍ୟ ବେଂଗମାନଙ୍କୁ ଚୁମ୍ବନ ଦେବା ଏକ ନାଗରିକ ଅଧିକାର ।

ଚନ୍ଦ୍ରଶେଖର

ହୋଇପାରେ । କିନ୍ତୁ ମୋ' ପାଖରେ ସେମାନେ ଅନେକ ଅଭିଯୋଗ କରୁଛନ୍ତି । ଖାଲି ଏତିକି ନୁହେଁ ।

କୃଷ୍ଣମୋହନ

ଆପଣ ସେମାନଙ୍କୁ ବୁଝେଇ ଦେଇପାରିବେ ।

ଚନ୍ଦ୍ରଶେଖର

କ'ଣ ବୋଲି ବୁଝେଇବି ?

କୃଷ୍ଣମୋହନ

ଶାନ୍ତିପୂର୍ଣ୍ଣ ସହାବସ୍ଥାନ । ଅଣ୍ଡରଷ୍ଟାଣ୍ଡମେଣ୍ଟ୍ । ଆପଣ ଜାଣନ୍ତି ଆମ ବିଜ୍ଞାନ କହୁଚି ବେଂଗ ଉଭୟଚର । କିନ୍ତୁ ମଣିଷ ସର୍ବଚର । ଜଳ, ସ୍ଥଳ, ପାହାଡ଼, ଆକାଶ, ଆଗ୍ନେୟଗିରି, ଜଳପ୍ରପାତ, ଉଷ୍ଣ ପ୍ରସ୍ରବଣ, ମରୁଭୂମି; ସବୁଠି ସେ ବଂଚିପାରେ ।

ଚନ୍ଦ୍ରଶେଖର

କିନ୍ତୁ ଆପଣ ମଣିଷକୁ ବେଂଗ ସହିତ ତୁଳନା କରୁଛନ୍ତି ଯେ ?

କୃଷ୍ଣମୋହନ

ନିଶ୍ଚୟ । ବେଂଗମାନେ ମଣିଷ ହୋଇପାରନ୍ତି । ଆପଣ କ'ଣ ଭାବୁଛନ୍ତି ଆମ ମନିଷମାନେ ବେଂଗ ନୁହଁନ୍ତି ? ଆମ ନେତାମାନେ ଠିକ୍ ପାଗ ଦେଖି ଟରର୍ ଟରର୍ କରିବା ଆପଣ କ'ଣ ଶୁଣିନାହାନ୍ତି ? ତା ଛଡ଼ା କେତେଜଣ ମଣିଷ ଯେଉଁ ଏକ ନିର୍ଦ୍ଦିଷ୍ଟ

ସମସ୍ୟାରେ ବେଂଗ ଭଲ ବୋବେଇବା ଆରଂଭ କରିଦିଅଛନ୍ତି, ତା' ହେଲେ ଆଗରେ ବର୍ଷା ହେବ ବୋଲି ତ ଆମେ ସ୍ପଷ୍ଟ ଜାଣିପାରୁଛୁ ।

ଚଂଦ୍ରଶେଖର

(ଅସନ୍ତୁଷ୍ଟ ହୋଇ ଉଠିଲେ) ଆପଣ ମୋର ସୁଂଦର ରବିବାରଟାକୁ ଅଜି ସତରେ ମାଟି କରି ପକେଇଲେ ।

କୃଷ୍ଣମୋହନ

ନା, ଅସଲ କଥା ହେଲା ଆପଣ ଏତେ ସମୟ ଧରି ବେଂଗମାନଂକ କଥା ଶୁଣିବା ପାଇଁ ଧୈର୍ଯ୍ୟ ରଖିନାହାଂନ୍ତି । କାରଣ···ଆପଣ ବେଂଗ ମାନଂକ ସହ ଶାଂତିପୂର୍ଣ୍ଣ ସହାବସ୍ଥାନ ଚାହାଂନ୍ତି ନାହିଁ···ଏବଂ ଏଇ ସହାବସ୍ଥାନ···ମାନେ ସେନ୍ସ୍ ଅଫ୍ ଅଣ୍ଡରଷ୍ଟାଣ୍ଡିଂ ନାହିଁ ବୋଲି ଅଜି ମାନବସମାଜ ଧ୍ୱଂସର ଉପକଂଠରେ ଠିଆ ହୋଇଛି ।

ଚଂଦ୍ରଶେଖର

ତା' ମାନେ ମତେ ଆଜି ଆପଣ ଜବରଦସ୍ତ ବୋର୍ କରିବା ପାଇଁ ସଂକଳ୍ପ କରିଥିଲେ ନା କ'ଣ ?

କୃଷ୍ଣମୋହନ

ସରଳ କଥା । ଆପଣ ଦିନେ ଅସନ୍ତୁଷ୍ଟ ପଡ଼ୋଶୀଂକର ନେତୃତ୍ୱ ନେଇ ଘର ମାଲିକ ହିସାବରେ ମତେ ଧମକ ଦେବାପାଇଁ ଆସୁଛଂନ୍ତି ସେତେବେଳେ ମୁଁ ଯାହା କହୁଚି ଶୁଣିବା ପାଇଁ ଆପଣ ବାଧ୍ୟ ।

ଚଂଦ୍ରଶେଖର

ଶୁଣିବା ପାଇଁ ମୁଁ ପ୍ରସ୍ତୁତ ଅଛି । କିଂନ୍ତୁ ଆପଣଂକ କଥାରେ କୌଣସି ଯୁକ୍ତି ନାହିଁ, ତର୍କ ନାହିଁ, କାରଣ ନାହିଁ ।

କୃଷ୍ଣମୋହନ

ପୃଥିବୀରୁ ଯୁକ୍ତିତର୍କ ଓ କାରଣ ଉଠିଗଲାଣି । ଭଗବାନଂକର ମୃତ୍ୟୁ ହେଲା ଦିନଠୁ ଯୁକ୍ତି, ତର୍କ ମାନେ କାରଣ, ଶିଜନଂ ସବୁ ଅଦୃଶ୍ୟ ।

॥ ଏକବିଂଶ ॥

ଟଙ୍କ ହବ୍ରୁ କଥାର କାରଣ ଥାଆନ୍ତା ଆମେ ଆଜି ଏଇଠି ବସିଛୁ କାହିଁକି ? କାହିଁକି ମୁଁ ବେଙ୍ଗମାନଙ୍କୁ ନେଇ ଗବେଷଣା କଲି ଏବଂ ତାକୁ ପ୍ରତିରୋଧ କରିବା ପାଇଁ ଆପଣ କାହିଁକି ବା ଏଇଠିକି ଆସିଲେ ? ମୁଁ, ଏଇ ବାଲ୍ଟି, ଆପଣ, ସେ ପରଦା ପଛପଟେ ଥିବା ଆକାଶ ସବୁଜ ବେଙ୍ଗ, ମାଧବୀ ଏ ଯନ୍ତ୍ରପାତି ଏବଂ ଏ ରେପ୍ଟାରମାନଙ୍କର ରହିବା ଏଇଠି କ'ଣ ଦରକାର ଥିଲା ?

ଚନ୍ଦ୍ରଶେଖର

ଆପଣଙ୍କୁ ହାତଯୋଡ଼ି ଗୁହାରି କରୁଛି ଆଜ୍ଞା ପ୍ଲିଜ୍...ଆପଣ ଭାଷଣ ଦେବା ବନ୍ଦ କରନ୍ତୁ । ମୋ' ମୁଣ୍ଡ ବିନ୍ଧିଲାଣି । ବରଂ ଦୟାକରି ଆଉ କପେ ଚା' ଯଦି...

କୃଷ୍ଣମୋହନ

ସେଇଥି ପାଇଁ ମୁଁ ରାଜି । (ବଡ଼ ପାଟିରେ) ମାଧବୀ...ଦୁଇ କପ୍ ଗ୍ରୀନ୍ ଲିଫ୍ ଚା' ପ୍ରସ୍ତୁତ କର...(କଣ୍ଠକୁ କୋମଳ କରି) ଆପଣ ଆମର ପଡ଼ୋଶୀମାନଙ୍କୁ କହନ୍ତୁ...ଏଥର ଖରାଦିନଆ ବର୍ଷା ଯୋଗୁଁ ବେଙ୍ଗମାନଙ୍କର ମତିଭ୍ରମ ହୋଇଛି । ସେମାନେ ଆମ ଘରଟାକୁ ଆସେମ୍ବ୍ଲି କିମ୍ବା ପାର୍ଲିଆମେଣ୍ଟ୍ ଭାବି ନେତାମାନଙ୍କ ଭଳି ଏଇଠି ଜମା ହୋଇଯାଉଛନ୍ତି ।

ଚନ୍ଦ୍ରଶେଖର

ଖାଲି ସେତିକି ନୁହେଁ । ଆପଣଙ୍କ ବିରୁଦ୍ଧରେ ଆହୁରି ମଧ୍ୟ ଅଭିଯୋଗ ହେଉଛି ଯେ ଆପଣ ରାତି ଅଧରେ ପୋଖରୀ ହୁଡ଼ା, ନାଳ, ନର୍ଦ୍ଦମା, ଗୁଳୁଣ୍ଡା ବଣ ଭିତରେ ଗୋଟାଏ ମୁଣି ଆଉ ଟର୍ଚ୍ଚ ଲାଇଟ୍ ଧରି ବେଙ୍ଗ ସଂଗ୍ରହ କରୁଛନ୍ତି ।

କୃଷ୍ଣମୋହନ

(ବିବ୍ରତ ହୋଇ) ମିଛ । କଂଚୁ ମିଛ । କିଏ କହିଲା ଆପଣଙ୍କୁ ? ମୁଁ କୃଷ୍ଣମୋହନ ମହାପାତ୍ର, ଏମ୍. ଏସ୍‌ସି. । ମୋର ଭାଷଣ ଶୁଣିବା ପାଇଁ ଗ୍ୟାଲେରୀରେ ସ୍ଥାନ ମିଳେନି । ମୋର ଗ୍ରନ୍ଥସଂଖ୍ୟା ପଚାଶ ହଜାର । ହାଉ ଡେର୍ ୟୁ ସେ' ଲାଇକ୍ ଦ୍ୟାଟ୍ ?

॥ ବସ୍ତ୍ରାଳିଶ ॥

ଚଂଦ୍ରଶେଖର

ଏବଂ ଆପଣ ଦିନେ ଦିନେ ଅଂଧାର ରାତିରେ ଗୋଟିଏ ଅଦ୍ଭୁତ ରକମର ଟୋପି ଏବଂ ଫଲ୍ସ୍ ଦାଢି ଲଗେଇ ରାସ୍ତାରେ ବୁଲୁଛଂତି । ଏଇ କଲେଜର ସ୍ତ୍ରୀମାନେ ଆପଣଂକୁ ଦେଖିଛଂତି ।

କୃଷ୍ଣମୋହନ

କନ୍ସ୍ପିରେସୀ । ମୋ' ନାଁରେ ସ୍ତ୍ରୀମାନେ ଷଡଯଂତ୍ର କରୁଥାଇ ପାରଂତି । ଏମିତି···ମାନେ ଆପଣ ବାଇବେଲ୍ ପଢ଼ିଥିବେ··· ଇଭ୍ କେମିତି ଅଇଁଠା ଏପଲ୍ ଖଂଡେ ଖୁଆଇ ଆଡାମ୍‌କୁ ଫାଁସେଇ ଦେଇଥିଲା···ଏବଂ ମତେ ଆପଣ···

ଚଂଦ୍ରଶେଖର

କ୍ଷମା କରିବେ କୃଷ୍ଣ ବାବୁ ! ସେମାନଂକର ଅଭିଯୋଗ ଯଦି ସତ ହୋଇଥାଏ ତା' ହେଲେ ପୋଲିସ୍‌ରେ ଖବର ଦେବାପାଇଁ ମୁଁ ବାଧ୍ୟ ହେବି ।

କୃଷ୍ଣମୋହନ

ଦେଖଂତୁ । ଆପଣ ଭୁଲ କରୁଛଂତି । କିଂବା ହେଇପାରେ ମୁଁ ଆପଣଂକର ଅଭିନ୍ନ । ଏଗାର ବର୍ଷର ସଂପର୍କ ଆମର । ସେଇଥି ପାଇଁ ବର୍ତ୍ତମାନ ଏଥର ସାଲସ୍ ପାଇଁ ଆମେ ଚେଷ୍ଟା କରିବା । କେମିତି ?

ଚଂଦ୍ରଶେଖର

କୁହଂତୁ । ମୁଁ ଚିଂତା କରିବି ।

କୃଷ୍ଣମୋହନ

ଆମର ସଂପର୍କ ଦୃଷ୍ଟିରୁ, ଅଂତତଃ ପକ୍ଷେ ଏଇ ଦୀର୍ଘ ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ···ଆପଣ ମତେ ଭଲ ପାଇବା ଆରଂଭ କରଂତୁ ।

ଚଂଦ୍ରଶେଖର

କାଂଭୁ···(ଯେମିତି ସେ ଆଗ୍ରହୀ ନୁହଂତି)

॥ ଯବନିକା ॥

**କୃଷ୍ଣମୋହନ**

ତା' ହେଲେ ମୁଁ ଆପଣଂକୁ···ତା' ହେଲେ ସବୁ ସମସ୍ୟାର ସମାଧାନ ହେଇପା'ରବ ।

**ଚଂଦ୍ରଶେଖର**

(ଅନ୍ୟ ଆଡେ ମୁହଁ ବୁଲାଇ) ଆପଣଂକ ସହିତ ସଂପର୍କ ରଖିବା ପାଇଁ ମୋର ଧୈର୍ଯ୍ୟ ନାହିଁ । ତା' ଆଜିର ଏଇ ବଥାବାର୍ତ୍ତାରୁ ମୁଁ ଆବିଷ୍କାର କଲି ।

**କୃଷ୍ଣମୋହନ**

ଆବିଷ୍କାର ? ହେଃ···ହେଃ ! (ଟିକିଏ ଭାବି) ଆଚ୍ଛା, ଆପଣ ମୂଳମୂଳରୁ ନିଶ୍ଚୟ କରିସାରିଲେଣି ଯେ ମୋ' ସାଂଗରେ ଆପଣ ଭଲ ସଂପର୍କ ରଖିପାରିବେନି ?

**ଚଂଦ୍ରଶେଖର**

ସେମିତି ଭାବିବା ପାଇଁ ମୁଁ ବାଧ୍ୟ । ଆପଣଂକର ବ୍ୟବହାର ସେଇଥି ପାଇଁ ଦାୟୀ ।

**କୃଷ୍ଣମୋହନ**

(ଚିଂତା କରି) ବେଶ୍ ଭଲ କଥା । ଆପଣ ମତେ ଘୃଣା କରଂତୁ । ଆଜିଠୁ ଘୃଣା କରିବା ଆରଂଭ କରିଦିଅଂତୁ । ଟ୍ରାଇ ଟୁ କିଲ୍ ମି । ଆପଣ ମତେ ହତ୍ୟା କରିପାରିବେ ? ଅର୍ ଆଇ ସାଲ୍···

**ଚଂଦ୍ରଶେଖର**

(ଡରିଯାଇ) ଆପଣ ମତେ···ହତ୍ୟା···

**କୃଷ୍ଣମୋହନ**

ନୋ' ଜୋକ୍ । ଥଟ୍ଟାର ପ୍ରଶ୍ନ ଉଠୁନି । ମଣିଷ ମଣିଷକୁ ଏକେତ ଘୃଣା କରିପାରେ କିଂବା ଭଲ ପାଇପାରେ ।

**ଚଂଦ୍ରଶେଖର**

କିଂତୁ ମୋର ଆପଣଂକୁ ଘୃଣା କରିବାରେ କ'ଣ ଅଛି ? ଆପଣଂକର ମୋର ସଂପର୍କ କେବଳ ଜଣେ ଭଡାବାଲା ଓ ଘର ମାଲିକର ସଂପର୍କ । ସେତିକି ଯଥେଷ୍ଟ ।

॥ ଚଉରାଳିଶ ॥

କୃଷ୍ଣମୋହନ

କାହିଁକି ଆମେ କ'ଣ ବାଲ୍ଟି ଓ ବେଂଗ ?

ଚଂଦ୍ରଶେଖର

ଆପଣ କ'ଣ କହିବାକୁ ଚାହୁଁଛଂତି ? ( ଏଥର ଉତ୍ତେଜିତ ହେଲେ ସିଏ )

କୃଷ୍ଣମୋହନ

(ବିକୃତ ଭାବରେ ହସିଲେ) ଅତି ସରଳ କଥା ।

ଚଂଦ୍ରଶେଖର

ଆପଣ ଏମିତି ହସୁଛଂତି କାହିଁକି ? (ଉଠିପଡି) ସତରେ ମତେ ମାରି ପକେଇବେ ନା କ'ଣ ?

କୃଷ୍ଣମୋହନ

ତା' ମାନେ ମତେ ଆପଣ ଭଲ ପାଇବା ପାଇଁ ପ୍ରସ୍ତୁତ ନୁହଂତି କିଂବା ଘୃଣା କରିବା ପାଇଁ···ଅର୍ଥାତ୍ ମନେ ମନେ ଘୃଣା କରି ବାହାରେ ଭଲ ପାଇଲା ଭଳି ଦେଖେଇ ହେବେ କିଂବା ବାହାରେ ଘୃଣା କରି ଲୁଚେଇ ଲୁଚେଇ ମତେ ଭଲ ପାଇବେ···କିଂବା ବେଳେବେଳେ ଭଲ ପାଇ ଅଧିକାଂଶ ସମୟ ଘୃଣା କରିବେ ବା ଅନେକ ସମୟରେ ଭଲ ପାଇ ବେଳେବେଳେ ସୁବିଧା ଦେଖି ଘୃଣା କରିବେ···ହିପୋକ୍ରାସି !! (ପୁଣି ହସିଲେ)

ଚଂଦ୍ରଶେଖର

ନା···ମାନେ·· ମତେ ଆପଣ ଭୁଲ୍ ବୁଝୁଛଂତି । ମୁଁ ଠିକ୍ ଏୟା କହୁନଥିଲି ।

କୃଷ୍ଣମୋହନ

ଯାହା କହିବା ପାଇଁ ଚାହୁଁଥିଲେ ବୁଝେଇବା ପାଇଁ ଆପଣଂକ ପାଖରେ ଭାଷା ନାହିଁ । ପୁଣି ଯୋଉ ଭାଷାରେ ଆପଣ କହୁଛଂତି ତାର ଅର୍ଥ ଠିକ୍ ଭାବେ ମୋ' ପାଖରେ ପହଂଚ ପାରୁନି । ହାଃ···ହାଃ···

।। ଯଂଚରୂଳଶ ।।

ଚଂଦ୍ରଶେଖର

(କିଛି ବୁଝି ନପାରି ଏବଂ ଛଂଡାଶୂନ୍ୟ ଓ ହତାଶ ହୋଇ)
ହୋଇପାରେ ।

କୃଷ୍ଣମୋହନ

(ଅଧ୍ୟାପକ ଭଳି) କମ୍ ଅନ୍ ଡିଅର୍ ବନ୍ଧୁ । ଏଇଟା କେବଳ ଆପଣଂକର ଓ ମୋର ପ୍ରଶ୍ନ ନୁହେଁ । ମଣିଷ ମଣିଷର ଅଂତର ପାଖରେ ପହଂଚିବାକୁ ଚାହିଁଲେ କେବଳ ଦୁଇଟି ରାସ୍ତା ଦେଇ ଯାଇପାରେ । ପ୍ରଥମଟି ପ୍ରେମ ଓ ଦ୍ୱିତୀୟଟି ଘୃଣା···ଆପଣ ମତେ ପ୍ରେମ କିଂବା ଘୃଣା ନକରି ଦୁଇଟିଯାକ ରାସ୍ତା ବଂଦ କରିଦେବା ପାଇଁ ଚାହୁଁଛଂତି ।

ଚଂଦ୍ରଶେଖର

(କ୍ଲାଂତ ହୋଇ) ହେ ଭଗବାନ୍ ! ଆଜି କି ବେଳାରେ ସକାଳ ହୋଇଥିଲା କେଜାଣି ··!!

କୃଷ୍ଣମୋହନ

ତେଣୁ ଆମେ ସବୁ ମଣିଷ ଆଜି ହାରିଯାଇଛୁ । କାର୍ଯ୍ୟ ଆଉ କାରଣର ସଂପର୍କ ଖୋଜି ଖୋଜି ଆଜି ଆଉ କୌଣସି କାରଣ ମିଳୁନି । ତେଣୁ ଆପଣ ମତେ ପଚାରି ପାରିବେନି ମୁଁ କାହିଁକି ରାତିରେ ପୋଖରୀ ହିଡ ଆଉ ବୁକୁଂଡା ବଣଂ ଭିତରେ ବୁଲି ବେଂଗ ଧରୁଚି ଏବଂ ସକାଳେ ସେମାନଂକୁ କ୍ଲୋରଫର୍ମ ଦେଇ ହତ୍ୟା କରୁଚି···ବୁଝିପାରିଲେ ?

[ ଚଂଦ୍ରଶେଖର କୌଣସି ଉତ୍ତର ଖୋଜି ନ ପାଇ ନର୍ଭାସ ହେଉଥିଲା ବେଳେ ମାଧବୀ ଟ୍ରେରେ ଚା' ନେଇ ପ୍ରବେଶ କଲେ । ମାଧବୀଂକୁ ଦେଖି ଚଂଦ୍ରଶେଖର ମନେ ମନେ ଖୁସି ହୋଇଗଲେ । କିଂତୁ ତେବେହେଁ ସେ

ତାଂକର କ୍ଳାଂତ ସ୍ପଷ୍ଟ ବାରି ହୋଇ ଯାଉଥାଏ । ଗୋଟିଏ ଗ୍ଲେଟ ଷ୍ଟୁଲ୍ ଆଣି ତାର ଉପରେ ମାଧବୀ ଚା' ଟ୍ରେ ରଖିଲେ ଏବଂ ନିଜେ ଗୋଟିଏ ଚେୟାର ଆଣି ବସିଲେ । ବର୍ତ୍ତମାନର ମଂଚ ସଜ୍ଜା ହେଲା : ମାଧବୀଂକ ସାମନାରେ ଦୁଇଟି ଚେୟାରରେ ପାଖ ପାଖ ହୋଇ କୃଷ୍ଣ ବାବୁ ଏବଂ ଚଂଦ୍ରଶେଖର ମହାଂତି । ମଝିରେ ଷ୍ଟୁଲ୍ ଉପରେ ଚା' ଟ୍ରେ । ]

ମାଧବୀ

ଆପଣ ଠିକ୍ ସେତିକି ଚିନି ଖାଆଂନ୍ତି ତ ? ମୁଁ ଟିକିଏ ବେଶି ମିଠା ଦେଇଥିଲି ।

କୃଷ୍ଣମୋହନ

ଅର୍ଥାତ୍ ମାଧବୀର ହାତଟା ଟିକିଏ ବେଶି ମିଠା ।

ଚଂଦ୍ରଶେଖର

(ଅପ୍ରସ୍ତୁତ ଭାବେ ହସିଲେ)

ମାଧବୀ

(ଚଂଦ୍ର ମହାଂତିଂକୁ) ଆପଣ ନିଶ୍ଚୟ ଆଜି ଯୁଂକ ସାଂଗରେ ଗପି ଗପି ବୋର୍ ହୋଇଥିବେ ।

ଚଂଦ୍ରଶେଖର

(ସତ କହିବା ପାଇଁ ସାହସ ନଥିବାରୁ) ନା, ଆଦୌ ନୁହେଁ । ଭଦ୍ରଲୋକ ଭାରି···ଇଂଟେରେଷ୍ଟିଂଗ୍—ଭୀଷଣ ଜ୍ଞାନୀ ।

କୃଷ୍ଣମୋହନ

କ'ଣ କହିଲେ ?

ମାଧବୀ

"ଭୀଷଣ ଜ୍ଞାନୀ" ।

॥ ସତଷ୍କିଶ ॥

କୃଷ୍ଣମୋହନ

(ନ ଶୁଣିଲା ପରି) ଓଃ···

ଚନ୍ଦ୍ରଶେଖର

ଆପଣଙ୍କ ଲବୋର୍‌ଟରୀରେ ବସି ବସି ଅନେକ କଥା ଚିନ୍ତିବାକୁ ପଡ଼ିଲା ।

କୃଷ୍ଣମୋହନ

ଆହୁରି ବସିଲେ ଆହୁରି ଶିଖିବେ ।

ଚନ୍ଦ୍ରଶେଖର

ନିଶ୍ଚୟ ଏଣିକି ଆସିବା ପାଇଁ ଚେଷ୍ଟା କରିବି ।

ମାଧବୀ

ଦୟାକର । ପ୍ଲିଜ୍ । ଆମ ଘରକୁ କେହି ଆସନ୍ତିନି ବୋଲି ମତେ ବେଳେବେଳେ ଏକୁଟିଆ ଲାଗେ । ମନେହୁଏ ଯେମିତି ପୃଥିବୀରେ ଆମର କେହି ନାହାଁନ୍ତି···ଖାଲି ଆମେ ଦୁଇଜଣ···ପୁଣି ଯେତେବେଳେ ଦେଖେ ଇଏ ବେଙ୍ଗ କାଟିବାରେ ବ୍ୟସ୍ତ, ମତେ ଲାଗେ ମୁଁ ଏ ପୃଥିବୀରେ ଖାଲି ଏକୁଟିଆ ବଂଚିଛି ।

କୃଷ୍ଣମୋହନ

ସତରେ ଆପଣ ଆସନ୍ତୁ ଏଣିକି । ଆମ୍ଭେ ବନ୍ଧୁ ହୋଇପାରିବା··· ଆପଣଙ୍କର କଥା ଶୁଣିବା ପାଇଁ ଅସୀମ ଧୈର୍ଯ୍ୟ ଅଛି ।

ମାଧବୀ

ଆଉ ଆମର କଥା କହିବା ପାଇଁ ।

କୃଷ୍ଣମୋହନ

ଦେଖ ମାଧବୀ ଏଇ ଏଗାର ବର୍ଷ ଭିତରେ ମୁଁ ଖୁବ୍ କମ୍ ଲୋକଙ୍କ ସାଂଗେ ମନଖୋଲି କଥାବାର୍ତ୍ତା କରିଛି ଏବଂ ପ୍ରାୟ ଆମ ଘରକୁ କେହି ବନ୍ଧୁ ବାଂଧବ ଆସିନାହାଂନ୍ତି କହିଲେ ଚଳେ । ଆଜ ଚଂଦ୍ର ବାବୁ ଯେତେବେଳେ ଆସିଛଂନ୍ତି···

॥ ଅଠଗୃଳଣ ॥

ମାଧବୀ

(କଥା ଛଡ଼ାଇ) ତମେ ତମର ବେଂଗମାନଂକ ବିଷୟରେ ବୁଝେଇବା ଆରଂଭ କରିଦେଇଥିବ ମୁଁ ଜାଣେ । ସେଇଠୁ କଥାର ଖିଅ ଲଂବିଯାଇଥିବ ଅନେକ ଦୂରକୁ...ଆଈ ମା' କାହାଣୀ, ବୁଢ଼ୀ ଅସୁରୁଣୀ...ଝିପି ଝିପି ବର୍ଷା...କୋହଲିଆ ପବନ...ଗୁଲୁଂଡା ବଣ...

[ମାଧବୀ ଏଇ କଥା କହୁଥିଲା ବେଳେ କୃଷ୍ଣମୋହନ ପୁଣି ଥରେ ଉତ୍ତେଜନା ଅନୁଭବ କଲେ । ତାଂକର ମନେ ମନେ ବହୁତ କଥା କହିବା ପାଇଁ ଇଚ୍ଛା ହେଲା । ଖୁବ୍ ଏକ ପ୍ରଗଲ୍‌ଭ ଭାବରେ ଅନେକ କିଛି କହିବାକୁ ଇଚ୍ଛା ହେଲା । ତେଣୁ ଖୁବ୍ ତାଜା ସ୍ୱରରେ ଆରଂଭ କଲେ...ଏକ ସ୍ୱପ୍ନ ଭରା ମନ ଦେଇ...]

କୃଷ୍ଣମୋହନ

ଆହୁରି ସେମିତି କଥା କହିବି । ଶୁଣିବ ?

ମାଧବୀ

କି କଥା ?

କୃଷ୍ଣମୋହନ

ବେଂଗୁଲି କଥା ।

ମାଧବୀ

କି ବେଂଗୁଲି ?

କୃଷ୍ଣମୋହନ

କାଠ ବେଂଗୁଲି ?

ମାଧବୀ

କି କାଠ ?

॥ ଅଣ୍ଟୈଶ ॥

କୃଷ୍ଣମୋହନ

ରାଜାଂକ କାଠ ।

ଚଂଦ୍ରଶେଖର

(ଅଦ୍ଭୁତ ସ୍ୱରେ ବସି) ଏ କଣ' ହଉଚ ?

ମାଧବୀ

(ଆଗ ଭଳି) କ ରାଜା ?

କୃଷ୍ଣମୋହନ

ଝଂଡ ଖଜା ।

ଚଂଦ୍ରଶେଖର

ହିଃ...ହିଃ...ହିଃ...

ମାଧବୀ

କ ଖଂଡ...?

କୃଷ୍ଣମୋହନ

ମୁର୍ଗୀ ଲଂଡ !! ହଃ...ହାଃ...ହାଃ...

ଚଂଦ୍ରଶେଖର

ହିଃ...ହିଃ...ହିଃ...

ମାଧବୀ

କ ମୁର୍ଗୀ...?

କୃଷ୍ଣମୋହନ

କଣ ମୁର୍ଗୀ...

ମାଧବୀ

କ...ବଣ ?

କୃଷ୍ଣମୋହନ

କଂଠା ବଣ ।

ମାଧବୀ

(ହସି ହସି) କ କଂଠା ? (ଗୀତ ଗାଇଲା ଭଳି)

॥ ସଙ୍ଗୀତ ॥

କୃଷ୍ଣମୋହନ

(ଗୀତ ସ୍ୱରରେ) କାନକୋଳ କଂଠା !!

ମାଧବୀ

(ଗାଇ ଗାଇ) ତହୁଁ ଲଗିଛି ଝୁଠା ପଠା !!

ଚଂଦ୍ରଶେଖର

(ସମ୍ଭାଳି ନପାରି) ହ୍ୱିଃ···ହ୍ୱିଃ···ହ୍ୱିଃ···(କ୍ରମେ ଟିଂଅଂକ ଭଳି ହସିବାକୁ ଲଗିଲେ ବଶୀକୃତ ହେଲା ଭଳି)

କୃଷ୍ଣମୋହନ

କ'ଣ ହେଲା ?

ଚଂଦ୍ରଶେଖର

କୁତୁ କୁତୁ ଲଗୁଛି ।

କୃଷ୍ଣମୋହନ

ଆପଣଂକର ତା' ହେଲେ ସେ ରୋଗଟା ଅଛି ? କାଇଁ ଦେଖି···

[ କୃଷ୍ଣମୋହନ ଚଂଦ୍ର ମହାଂତିଂକୁ ପେଟରେ ବର୍ତ୍ତମାନ କୁତୁକୁତୁ କରିବା ଆରଂଭ କରିଦେଲେ ଏବଂ ଖୁବ୍ ହସିବାକୁ ଲଗିଲେ ଚଂଦ୍ର ମହାଂତି । ତାଂକ ସାଂଗରେ କୃଷ୍ଣମୋହନ ନିଜେ । ମାଧବୀ ହାତ ତାଳି ଦେଇ ଏଇ ଫାର୍ସ ଦେଖିବାକୁ ଲଗିଛି ଏବଂ ହସିଛି । ଚଂଦ୍ରଶେଖର ବାବୁ ଆଉ ବସିପାରି ନାହାଂତି । ]

ଚଂଦ୍ରଶେଖର

(ହସ ସମ୍ଭାଳି ନପାରି) ଆଜ୍ଞା···ଅଜ୍ଞା···ବାଏ···ପରେ ଆସିବି । (ଚାଲିଗଲେ । ମାଧବୀ ଓ କୃଷ୍ଣମୋହନ ସେମିତି ହସୁଥାଆଂତି)

[ଉଭୟେ କିଛି ସମୟ ହସିଲା ପରେ କ୍ଲାଂତ ହୋଇଯାଇଛଂତି । ]

କୃଷ୍ଣମୋହନ

ଓଃ !! ବହୁତ ହସି ପକେଇଲ ।

ମାଧବୀ

କିଂଶୁ ଅନେକ ଦିନ ପରେ ଆଜ ଆମେ ହସିଲେ ।

କୃଷ୍ଣମୋହନ

ଅବଶ୍ୟ ।

ମାଧବୀ

ଆଜ ସକାଳୁ ତମେ କିଛୁ ଶିସାଇଁ କାମ କରିନା ।

କୃଷ୍ଣମୋହନ

ତମେ ମତେ ହଇରାଣ କରୁଚ ।

ମାଧବୀ

ସବୁଥିରେ ମୋତେ ଦୋଷ ଦେବା ତମର ଅଭ୍ୟାସ ହେଇଗଲଣି ।

କୃଷ୍ଣମୋହନ

କିଂଶୁ ବିନା କାରଣରେ ନୁହେଁ ।

ମାଧବୀ

ତମେ ଏଗାର ବର୍ଷ ହେଲ ମତେ ଏମିତି ଠକିଦେଇ ଆସୁଛ ।

କୃଷ୍ଣମୋହନ

ତମର କୋଉ ଖାର ଭାଇ ଆଜ ଆସିବାର ଥିଲ ପରା ?

ମାଧବୀ

ବାରଟା ବେଳେ ଆସିବେ ।

କୃଷ୍ଣମୋହନ

ସାଢ଼େ ଏଗାରଟା ବାଜିବା ଉପରେ ।

ମାଧବୀ

ମୁଁ ଷ୍ଟେସନ୍ ଯାଇ ତାଙ୍କୁ ରିସିଭ୍ କରି ଆଣିବ ।

॥ ବାବନ ॥

କୃଷ୍ଣମୋହନ

ଯାଅ—ପ୍ଲିଜ୍...ମତେ ଆଉ...

ମାଧବୀ

ତମେ କିଂତୁ ଟିକିଏ ସାବଧାନ ହୋଇ ତାଂକ ସାଂଗରେ ବ୍ୟବହାର କରିବ । ଆଜି ଭଲ ନୁହେଁ ।

କୃଷ୍ଣମୋହନ

ଆଜି ମୁଁ କଣ କଲି ?

ମାଧବୀ

ଭଦ୍ରଲୋକଂକୁ କୁତୁ କୁତୁ କଲ ।

କୃଷ୍ଣମୋହନ

ସିଏ ମତେ କୁତୁ କୁତୁ କଲେ ?

ମାଧବୀ

କଣ ହେଲା ? ସିଏ ତମକୁ କୁତୁ କୁତୁ କଲେ ।

କୃଷ୍ଣମୋହନ

(ଅପରାଧୀ ଭଳି ଦୋଷ ଲୁଚେଇଲେ) ନ ହେଲେ ତମେ କରିଥିବ ।

ମାଧବୀ

ଅସଲ କଥା ତମେ କଣ କରୁଚ ତମର ମନେ ରହୁନ ! ତମ ମନ ଅସ୍ଥିର । ନଉରୋସିସ୍ !!

କୃଷ୍ଣମୋହନ

ମୋର ତମକୁ ବାହା ହୋଇ ଭୁଲ୍ ହୋଇଛି । ତମେ ସବୁବେଳେ ମୋର ଦୋଷ ବାଛୁଚ—ଗୁଣ ନୁହେଁ !

ମାଧବୀ

ତମ ପାଖରେ ଗୁଣ କାହିଁ ? ଏଗାର ବର୍ଷ ଭିତରେ ପାଂଚହଜାର ବେଂଗ କାଟି ପକେଇଲ । ଅଥଚ ମଣି ଦେଖା ନାହିଁ । ତେଣୁ ତମେ ପାପୀ ।

କୃଷ୍ଣମୋହନ

ତମେ ମୋ' ପାପରେ ଅର୍ଦ୍ଧାଂଗିନୀ ।

ମାଧବୀ

ଦସ୍ୟୁ ରତ୍ନାକରର ସ୍ତ୍ରୀ ମଧ୍ୟ ତା' ପାପର ଭାଗ ନେଇନଥିଲା ।

କୃଷ୍ଣମୋହନ

ତା ବୋଲି ତମେ ବି ନବନି ?

ମାଧବୀ

ନା । ତମେ ନିଷ୍ଠୁର । ତମେ ମଣି ଖୋଜିବା ବାହାନା କରି ଜୀବନ ସାରା ମତେ ଅବହେଳା କରିଛ ।

କୃଷ୍ଣମୋହନ

ଆଉ ତମେ ?

ମାଧବୀ

ତମ ପାଇଁ ଅନୁରକ୍ତ ରହିବା ପାଇଁ ମତେ ତମେ କଣ ଦେଇଚ ? ତମେ ଏଇ ସଂସାରକୁ ଡରୁଚ । ମୁଁ ଜାଣେ ( ଅଭିମାନ)

କୃଷ୍ଣମୋହନ

(ହଠାତ୍ ବିବ୍ରତ ହୋଇ) ଏଁ ? ମୁଁ ସଂସାରକୁ ଡରୁଛି ? କିଏ କହିଲା ?

ମାଧବୀ

ତମର ଡର ବାସ୍ତବତାକୁ । ସ୍ତ୍ରୀ, ସନ୍ତାନ, ଦୁଃଖ ଆଉ ଏଇ ପୃଥିବୀର ଶୂନ୍ୟତାକୁ । କିଂତୁ ମତେ ଅବହେଳା କରି ତମେ ଶାଂତି ପାଇ ପାରିବନି—ମୁଁ କହି ଦେଉଚି । (ସ୍ୱର କରୁଣ)

କୃଷ୍ଣମୋହନ

ତମେ ମୋ ସାଧନାକୁ ଦୁର୍ବଳ କରିଦେଉଚ । ତମେ ବର୍ତ୍ତମାନ ଷ୍ଟେସନକୁ ଯାଇ ପାର । ତମ ବାପଭଦ୍ର ଆସୁଥିବେ...

॥ ତଉବନ ॥

ମାଧବୀ

ମୁଁ ଜାଣେ, ତମେ ମତେ ସବୁବେଳେ ଏମିତି ଦୂରେଇ ଦେବାକୁ ଚାହୁଁଚ, କିଂତୁ···

କୃଷ୍ଣମୋହନ

ତମେ ମତେ ଦୂରେଇ ଦେବାକୁ ଚାହୁଁଚ। (ଜୋର୍‌ରେ) ସେଇଥି ପାଇଁ 'ପିଙ୍ଗ୍-ପଙ୍ଗ୍' ଆଉ 'ନାଇଟ୍ କୁଇନ୍'କୁ ଲବୋରାଡ୍‌ଠାରୁ ଅଲଗା କରି ପୋଷିଛି।

ମାଧବୀ

ତମ ପାଇଁ ମୁଁ ବଦନାମ ହଉଚି। ତମ ପାଇଁ ମୁଁ ଅସାମାଜିକ ହେଇ ଗଲିଣି।

କୃଷ୍ଣମୋହନ

ପ୍ଲିଜ୍···ତମେ ଏତେ ପାଟି କରନି। ଆସ୍ତେ ଆସ୍ତେ ଗାଳି ଦିଅ।

ମାଧବୀ

(ବଡ଼ ପାଟିରେ) କାଇଁକି ଆସ୍ତେ ଆସ୍ତେ କହିବି? ତମେ ଦୁନିଆ ସାରା ବୁଲି ଆସିଲ···କାହା ଘରେ କିଏ ଏମିତି କୁକୁର ଗୋଟେ ପୋଷିଛି?

କୃଷ୍ଣମୋହନ

କିଏ ମୋ' ଭଳି କରୁନି ବୋଲି ତ ମୁଁ ଜଣେ ମହାପୁରୁଷ···ଯୀଶୁ, ବୁଦ୍ଧ ଆଉ ଶ୍ରୀ କୃଷ୍ଣଂକ ଭଳି।

ମାଧବୀ

ସେମାନେ ଭଗବାନ୍। ମହାପୁରୁଷ ନୁହଂତି।

କୃଷ୍ଣମୋହନ

ଭଗବାନ ମରିଗଲେଣି···

ମାଧବୀ

ତମେ ଏକଥା କହୁଛ? କିଂତୁ ଲୁଚେଇ ପାରିବନି ତମେ। ମୁଁ ସବୁ ଜାଣିଛି।

॥ ଅଂଚାବନ ॥

କୃଷ୍ଣମୋହନ

(ଟେବୁଲ ଧରି ଝଡ଼ଗଲା ଭଳି) କ'ଣ ଜାଣିଚ ? କ'ଣ ମୁଁ ଲୁଚେଇଛି ?

ମାଧବୀ

(ହସି ହସି) ମୁଁ ଜାଣିଛି ।

କୃଷ୍ଣମୋହନ

ସ୍ତ୍ରୀମାନେ କପଟୀ ।

ମାଧବୀ

ପୁରୁଷମାନେ କ'ଣ କୃତଘ୍ନ ନୁହଂନ୍ତି ?

କୃଷ୍ଣମୋହନ

ମୁଁ ଯଦି ଚାହିଁବି...ମୁଁ ଯଦି ଅଭିଶାପ ଦେବି...ତମେ ବି ସକାଳୁ ବେଂଗ ହୋଇଯିବ ।

ମାଧବୀ

ଏଁ !! କ'ଣ ହେଇଯିବି ?

କୃଷ୍ଣମୋହନ

ବେଂଗ । ତମକୁ ମୁଁ ବେଂଗ କରି ପକେଇବି ।

ମାଧବୀ

କାହିଁକି କରିବନି ? ମୁଁ କଥା କହିଲେ ଯିନା ତମର ସବୁ ଗବେଷଣା ଖରାପ ହେଇଯାଉଚି । ବେଂଗ କରିଦେବ ବୋଲି ସେଇଥି ପାଇଁ ଭାବୁଚ (ଭାବପ୍ରବଣ ହୋଇ) ଆଚ୍ଛା ମୁଁ ଯଦି ବେଂଗ ହେଇଯାଏ ମତେ ବି ତମେ କାଟି ପକେଇବ ?

କୃଷ୍ଣମୋହନ

ନିଷ୍ଚୟ । ତା' ପରେ ହଠାତ୍ ଦିନେ ଏ ସହରର ସମସ୍ତଂକୁ ବେଂଗ କରିପକେଇବି । ଓ୍ୱାନ୍ସ୍ ଇନ୍ ଏ ଫାଇନ୍ ମର୍ନିଂ...ସମସ୍ତେ ବେଂଗ ହେଇ ଟର୍ର୍ ଟର୍ର୍ କରୁଥିବେ...

। ଛପନ ।।

ମାଧବୀ

ତମେ ସବୁ ଏମିତି ଉଦ୍ଭଟ କଳ୍ପନା କରୁଥିବ ନା କିଛି କାମ କରିବ ? ଏମିତି ଏମିତି ହେଇ ତ ବାରଟା ବାଜିବା ଉପରେ···

କୃଷ୍ଣମୋହନ

ତମେ ମନେ ଏକଲା ବସିବାକୁ ଦିଅ···ପ୍ଲିଜ୍···ତମେ ଷ୍ଟେସନକୁ ଯାଅ—

ମାଧବୀ

(ଯିବାପୂର୍ବରୁ ହଠାତ୍ ମନେ ପକାଇ) ଶ୍ରୀ ଶ୍ରୀ କୋଦଂବା ଦେବୀଙ୍କ ପାଖକୁ ପ୍ରେୟାର୍‌ଟା ଲେଖିଲ ?

କୃଷ୍ଣମୋହନ

କୋଉ ପ୍ରେୟାର୍ ?

ମାଧବୀ

ପୁଅ ଝିଅ ହେବା ପାଇଁ—

କୃଷ୍ଣମୋହନ

ମୁଁ କୋଦଂବାଙ୍କୁ ବିଶ୍ବାସ କରେନା—

ମାଧବୀ

ତମେ କାହାକୁ ବିଶ୍ବାସ କର ଯେ ? ଏ ଦୁନିଆ ଯାକର ଲୋକ ପଛେ ଫଳ ପାଉଥାଂନ୍ତି—ତମେ ଏକଲା···(ବିରକ୍ତ ହୋଇ) ହଉ ମୁଁ ଷ୍ଟେସନ୍ ଯାଉଚି । ଭୋକ ହେଲେ ହାତରେ କାଢ଼ି ଆଣି ଖାଇ ପକେଇବ···ଭୋକରେ ରହିବନି···ପ୍ଲିଜ୍···ତମ ସ୍ୱାସ୍ଥ୍ୟ ଖରାପ ହେଇଗଲାଣି—(ଯାଉ ଯାଉ ପଛରୁ ଫେରି) ହଁ···ଆଉ ଭାଇଙ୍କ ସଂପର୍କରେ ଯାହା କହିଥିଲି ମନେ ରହିଲା ତ ?

କୃଷ୍ଣମୋହନ

ତମେ ଶୀଘ୍ର ଯାଅ—ଟ୍ରେନ୍ ସମୟ ହେଇଗଲାଣି ।

[ ମାଧବୀ ଚାଲିଗଲା ପରେ କୃଷ୍ଣମୋହନ ପଛେ ପଛେ ଯାଇ ଦୁଆର ବଂଦ କରେ

॥ ସତାବନ ॥

[ ଦେଉଛନ୍ତି । ବର୍ତ୍ତମାନ ତାଙ୍କ ମୁହଁରେ ଏକ ଖୋଲା ହସ ଦେଖା ଦେଉଛି । ଦୀର୍ଘ ଦିନ ବନ୍ଦୀର ଏକ କଏଦୀ ମୁକ୍ତାକାଶ ତଳକୁ ଖସି ଆସିଲା ପରି, ସେ ଖୁସିରେ ଶୋଇବା ଘର ଭିତରକୁ ପଶିଛନ୍ତି । ପୁଣି କଣ ଭାବି ଫେରି ଆସିଛନ୍ତି । ଟେବୁଲ୍ ଡ୍ର ଭିତରୁ ଗୋଟିଏ ଶ୍ରୀ ଶ୍ରୀ କୋଦଂବା ଦେବୀଙ୍କ ଟୋପୀ ବାହାର କରିଛନ୍ତି ଏବଂ ତାକୁ ପିନ୍ଧି ମନେ ମନେ ହସିଛନ୍ତି । ଘେରାଏ ବୁଲି ଆସିଛନ୍ତି ଘରର ଚାରିପଟେ । ପୁଣି ଯାଇଛନ୍ତି ଶୋଇବା ଘର ଭିତରକୁ । ଏଥର ଗୋଟାଏ ଗେରୁଆ କନା ଭିତରୁ ବାହାର କରି ଆଣିଛନ୍ତି । ଧଳା ଦାଢ଼ି ଗୋଟାଏ ଠିକ୍ ଯାତ୍ରା ଦଳର ଦାଢ଼ି ଭଳି । ସେଇଟାକୁ ମୁହଁରେ ଲଗେଇଛନ୍ତି ଏବଂ ଗୋଟାଏ ଦର୍ପଣ ଆଣି ନିଜ ମୂର୍ତ୍ତିକୁ ଦେଖି ହସିଛନ୍ତି ।

ପୁଣି କିଛି ସମୟ ପରେ ଶୋଇବା ଘରୁ ଗୋଟାଏ ଗେରୁଆ ଧୋତି ଏବଂ ବିବେକାନନ୍ଦଙ୍କ ଭଳି କୁର୍ତ୍ତା ପିନ୍ଧି ମଞ୍ଚ ଉପରକୁ ଆସି ଦର୍ପଣ ଦେଖିଛନ୍ତି । ଦାଢ଼ିକୁ ଆଉଁଷାନ୍ତି ଆଉଁଷାନ୍ତି କିଛି ସମୟ ଶୂନ୍ୟ ପାଦଚାରଣ କରୁ କରୁ ]

**କୃଷ୍ଣମୋହନ**

(ସ୍ୱଗତଃ) ମୁଁ···କୃଷ୍ଣମୋହନ·· ଅଧ୍ୟାପକ କୃଷ୍ଣମୋହନ ମହାପାତ୍ର, ଏମ୍. ଏସ୍‌ସି. ଅଧ୍ୟାପକ ପ୍ରାଣୀ ବିଜ୍ଞାନ; ଏବଂ ଅର୍ଦ୍ଧ ଏଗାର ବର୍ଷ

ଚହ୍ଲ ଆପଣମାନଙ୍କ ସେବାରେ ଜୀବନ ଉତ୍ସର୍ଗ କରିଦେଇଛି... ପାଂଚ ହଜାର ବେଂଗଙ୍କୁ ହତ୍ୟା କରିସାରିଛି ଏବଂ ଆହୁରି ପାଂଚ ହଜାର ହତ୍ୟା କରିବି...(ହସିଲେ) ସେମାନଙ୍କ ରକ୍ତରେ ଗାଧୋଇ ପ୍ରାୟଶ୍ଚିତ୍ତ କରିବି । ତା'ପରେ ମୁଁ ପାଇବି 'ମଣି'...ବର୍ଷାର ପ୍ରଥମ ବିଂଦୁ ପାଉରେ ବେଂଗ ମୁଂଡରେ ଯେଉଁ 'ଉଜ୍ଜ୍ୱଳ ମଣି' ଭିଆରି ହୁଏ, ସେଇ 'ମଣି' ।

[ ଏଇ ସ୍ୱଗତୋକ୍ତି କହୁବେଳେ ମଂଚ ସମ୍ପୂର୍ଣ୍ଣ ଅଂଧକାର ହେବ ଏବଂ କେବଳ ଗୋଟିଏ ସ୍ପଟ୍ ଆସି ଶ୍ରୀ ମହାପାତ୍ରଙ୍କ ଉପରେ ପଡ଼ିବ । ସଂଳାପ ଶେଷ ହେବା ପରେ କ୍ରମେ କ୍ରମେ ସ୍ପଟ୍ ଟି ମଧ୍ୟ ଲିଭିଯିବ ]





[ ମଂଚ ପୁଣି ଆଲୋକିତ ହେଲା । ଏହାକୁ ନାଟକୀୟ ଭାଷାରେ 'ଦ୍ୱିତୀୟ ଅଂକ' ନାମରେ ନାମିତ କରାଯାଇ ନାହିଁ । କାରଣ ଏହି ନାଟକକୁ ଦୁଇ/ତିନି ଭାଗରେ ବିଭକ୍ତ କରିବା ଆବଶ୍ୟକ ନାହିଁ । ନିର୍ଦ୍ଦେଶକ ଓ ସ୍ରଷ୍ଟା ଚାହିଁଲେ ଏଇ 'ବିରତି'କୁ ଉଠାଇ ଦେଇ ପାରଂତି ଏବଂ ଏକା କ୍ରମରେ ନାଟକ ଅଭିନୀତ ହୋଇପାରେ ।

ମଂଚ ଆଲୋକିତ ହେଲାବେଳକୁ ବାହାରେ ଦୁଆର ଖଟ୍ ଖଟ୍ ଶବ୍ଦ ହେଲା ଏବଂ ବେଡ୍ ରୁମ ଭିତରୁ କୃଷ୍ଣମୋହନ ଦୌଡ଼ି ଆସିଲେ; ମୁହଁରେ ସେଇ ଦାଢି, ପୁଣି ଖଟ୍ ଖଟ୍ । ବିଚଳିତ ହୋଇ କୃଷ୍ଣମୋହନ ତାଂକର ଦାଢ଼ିଟିକୁ ଟେବୁଲ୍ ତ୍ରରେ ରଖିଲେ ଏବଂ ଭଦ୍ରସ୍ୱରରେ ଦୁଆର ଖୋଲିଲେ ।

ପ୍ରବେଶ କଲେ ମାଧବୀ ଓ ସାଂଗରେ ବୀରଭଦ୍ର । ବୟସ ୩୦/୩୫ ହୋଇପାରେ । କିଂତୁ ଅପେକ୍ଷାକୃତ ଶ୍ରେଷ୍ଠ ଓ ପ୍ରଗଲ୍‌ଭ ଦେଖାଯାଆଂତି । ]

ମାଧବୀ

ଇଏ ହେଉଛଂତି···

ବୀରଭଦ୍ର

ମୁଁ ବୀରଭଦ୍ର ମିଶ୍ର । ମାଧବୀର···

କୃଷ୍ଣମୋହନ

ହାଇ···! ହାଃ···ହାଃ···ସିଓର୍ !! ନମସ୍କାର (ଠକଏ ଡ୍ରେଶରେ) ମୋର···ମାନେ···ଆପଣ ଏତେ ଡ୍ରେଶ୍ କଲେ ଯେ ଆମେ··· ଅର୍ଥାତ୍ ମାଧବୀ···

ବୀରଭଦ୍ର

ମୋ' ପାଇଁ ମୁଁ ଜାଣେ ଆପଣମାନେ ଅପେକ୍ଷା କରଥିବେ । କିନ୍ତୁ କ'ଣ କରିବ କହିଲ ? ଆଜିକାଲି ଇଣ୍ଡିଆନ୍ ରେଲ୍‌ୱେଜ୍ ଏତେ ବାଜେ ହେଲଣି ଯେ—

କୃଷ୍ଣମୋହନ

ସିଓର । ନିଶ୍ଚୟ ହୋଇଥିବ···

ମାଧବୀ

କ'ଣ ନିଶ୍ଚୟ ହୋଇଥିବ ? ତମେ ଏଗାର ବର୍ଷ ହେଲା ବାହାରିକୁ ଯାଇନା । ତମେ କେମିତି ଜାଣିଲ ?

କୃଷ୍ଣମୋହନ

ଓଃ ··ପ୍ଲିଜ୍···ଭଦ୍ର ଲୋକଙ୍କୁ ଖୁଆଇ ପିଆଇ ପ୍ରଥମେ ସତ୍କାର କର ।

ମାଧବୀ

ସତେ ମ ବୀରଭାଇ ! ଦିନ ଗୋଟାଏ ବାଜିଲଣି ଯେ···ତମେ ଆସ ।

ବୀରଭଦ୍ର

(କୃଷ୍ଣ ବାବୁଙ୍କୁ) ଆଚ୍ଛା ମୁଁ ଟିକଏ···

କୃଷ୍ଣମୋହନ

ନିଶ୍ଚୟ ।

ମାଧବୀ

ତମେ ବି ଆସ (ବୀର ବାବୁଙ୍କୁ) ବୀର ଭାଇ···ବାଥ୍ ରୁମ୍‌ରେ ପାଣି ଅଛି !

॥ ବାଷଠି ॥

ବୀରଭଦ୍ର

ଅଚ୍ଛା…ଅଚ୍ଛା · ମୁଁ ଯାଉଛି ।

[ ମାଧବୀ ବୀରଭଦ୍ରଙ୍କୁ ନେଇ ଭିତରକୁ ଗଲାପରେ କିଛି ସମୟ ପାଇଁ କୃଷ୍ଣମୋହନ ସେଇ ବେଗଟିକୁ କାଟିବାରେ ବ୍ୟସ୍ତ ରହିଲେ । ପୁଣି କିଛି ସମୟ ପରେ ଆଉ ଗୋଟିଏ ବାଲ୍‌ଟି ଭିତରୁ ଧରି ଆଣିଲେ ଏବଂ ତା' ପରେ ଆଉ ଗୋଟିଏ ଯାଇ ଘର ଭିତରୁ ଆଣିଲେ । ଏଥର ଟିକିଏ ବଡ଼ । 'ପିଙ୍ଗ୍ ପଙ୍ଗ୍'—ତାଙ୍କ ମୁହଁରେ ବିରକ୍ତି ଦେଖାଦେଲା । କୌଣସିଟିରେ 'ମଣି'ର ସନ୍ଧାନ ନପାଇ ସେ କାଟିବା ସଂଙ୍ଗ ଓ ଫୋର୍‌ସେପ୍‌ଟିକୁ ଫୋପାଡ଼ି ଦେଲେ ଟ୍ରେ ଭିତରେ ଏବଂ କ୍ଲାନ୍ତ ହେଲଭଳି ବସିଗଲେ ଚୌକିରେ…]

କୃଷ୍ଣମୋହନ

ଚୋକ୍‌କା ! ବଟେଥ୍ୟାଲ୍ ! ନନ୍‌ସେନ୍‌ସ୍ !!

(ମାଧବୀ ପ୍ରବେଶ କଲେ)

ମାଧବୀ

ଦିନ ଗୋଟାଏ ବାଜିଲାଣି ଏମିତି ବସି ରହିଲ କ'ଣ ମ ? ଖାଇବନି ? ଏମିତି ବେଳରେ ଖାଇ ତ ସ୍ୱାସ୍ଥ୍ୟ ନଷ୍ଟ କଲଣି (ହଠାତ୍ ମନେ ପକେଇ) ତମେ କିଛି ଭିଟାଭେକ୍ସ୍ ଖାଇବା ଉଚିତ…ଏବଂ ପ୍ରୋଟିନ୍ ମଧ୍ୟ…ମୁଁ ଆଜି ବୀର ଭାଇଙ୍କୁ କହିବି ତମ ପାଇଁ କିଛି ଔଷଧ ଦେବେ…(ପୁଣି ଅତ୍ୟନ୍ତ ସ୍ନେହତ) କଣ କିଛି କଲ ?

କୃଷ୍ଣମୋହନ

ନା ।

ମାଧବୀ

ମୁଁ ଟେଲିବେକୁ ଏମିତ ରେସ୍ତୋରାଁରେ ବସିଛ ?

କୃଷ୍ଣମୋହନ

ହୁଁ...

ମାଧବୀ

ଏମିତ ଏ ଲବୋରେଟୋରିଟାରେ ବସି ରହିଲେ ତମ ମୁଣ୍ଡ ଝରାପ ହୋଇ ଯାଉଛି । ଚାଲ...ଅଜ ଟିକଏ ସିନେମା.. କିଂବା ବାହାରେ ବୁଲି ଆସିବା । ତମେ ଟିକେ ଫ୍ରେଶ୍ ହୋଇଗଲେ ପୁଣି ଗବେଷଣା ଆରଂଭ କରିବ...

କୃଷ୍ଣମୋହନ

ତମ ଘାଇ ଡାକ୍ତର ?

ମାଧବୀ

ନା' ତ !! ତମକୁ କିଏ କହିଲା ?

କୃଷ୍ଣମୋହନ

(କଲ୍ପିତ ଭାବରେ ) ଭାବୁଥିଲି...

ମାଧବୀ

ନା । ସେ ମେଡିକାଲ୍ ଷ୍ଟୁଡେଂଟ୍ । ଅବଶ୍ୟ ଏମ୍. ଏସ୍‌ସି. ସିଏ ମଧ୍ୟ ପାଶ୍ କରିଛଂତ ।

କୃଷ୍ଣମୋହନ

ଅଚ୍ଛା ମାଧବୀ ? ମୁଁ ଗତ ରବିବାର ଦିନ ହାଟରେ ମୋଟ କେତୋଟା ବେଂଗ ଧରିଥିଲି ? ଫର୍ଟି ନାଇନ୍ ?

ମାଧବୀ

କେଜାଣି !! ମୁଁ କ'ଣ ଗଣିଛି ?

କୃଷ୍ଣମୋହନ

କିଂଭୁ ଦୁଇଟା ବେଂଗ ପୋଷିଛ ଯେ ?

॥ ଚଉଷଠି ॥

ମାଧବୀ

ମୁଁ କାହିଁକି ପୋଷିବି ମ ? ସେମାନେ ସେଇଠି ରହିଯାଇଛଂନ୍ତି ନା !

କୃଷ୍ଣମୋହନ

ଅଚ୍ଛା ? (ମୁଖଭଂଗୀରୁ ଜଣା ପଡୁଥିଲା ଯେମିତି ନୂଆ ଶୁଣିଲ !)

ମାଧବୀ

ଗତ ଦୁଇ ବର୍ଷ ସେ ଦୁ'ଜଣ ଏଇଠି ଅଛଂନ୍ତି । ଖୁବ୍ ମୋଟେଇ ଯାଉଛଂନ୍ତି ଦିନକୁ ଦିନ ।

କୃଷ୍ଣମୋହନ

ମୋଟା ହେଲେଣି ? ତମେ ସେମାନଂକୁ ଭିଟାମେନ୍ସ ଖୁଆଉଚ ?

ମାଧବୀ

ତମେ ଯୋଉ କଥା ବେଳେବେଳେ କୁହ...

କୃଷ୍ଣମୋହନ

(ଯେମିତି ଚେୟାର୍‌ରେ ବସି...ଯେମିତି ଏ ଜଗତରେ ସିଏ ନାହାଂନ୍ତି) ଆଚ୍ଛା ମାଧବୀ ! ତମେ ଭଲ ଭାବରେ ଦେଖିଛ ସେ ଦୁ'ଟା ବେଂଗ ?

ମାଧବୀ

ମାନେ ?

କୃଷ୍ଣମୋହନ

ସେମାନେ ବେଂଗ ନ ହେଇ ଦୁ' ଜଣ 'ସ୍ୱର୍ଗଦୁତ' ବି ହେଇ ପାରଂନ୍ତି !

ମାଧବୀ

ଇସ୍ ! ତମର କି କଳ୍ପନା...? ସେମାନେ ତ ଦୁ' ବର୍ଷ ହେଲା ଏ ଘରେ ଅଛଂନ୍ତି...କାହିଁ...କେଉଁ...

କୃଷ୍ଣମୋହନ

ଦୁ'ମାସ ?

ମାଧବୀ

(ଠିକ୍ ମନେରଖିଲା ଭଳି) ଦୁଇ ବର୍ଷ । ମୋର ଠିକ୍ ମନେ ଅଛି ।

କୃଷ୍ଣମୋହନ

କିଂତୁ ସତରେ ଯଦି ସେମାନେ 'ସ୍ୱର୍ଗଦୂତ' କିଂବା 'ଅପ୍ସରା' ହୋଇଥାଂତି···କିଂବା···ତମେ ବୁଢ଼ୀ ମାଆଂକଠୁ ପିଲାଦିନେ ତ କାହାଣୀ ଶୁଣିଥିବ । ମନେକର କୋଉ ରାଜକନ୍ୟା ଅଭିଶାପ ପାଇ ବେଂଗ ହୋଇଯାଇ ଥାଇପାରେ...?

ମାଧବୀ

କିଂତୁ !!···ମୋର ମନେ ହେଉଛି···

କୃଷ୍ଣମୋହନ

(ହଠାତ୍) କଅଣ ମନେ ହେଉଛି ?

ମାଧବୀ

ନାଇଁ ସେମିତି କିଛି ନାଇଁ । ଗୋଟାଏ ଆଇଡିଆ···

କୃଷ୍ଣମୋହନ

ଟେଲ୍ ଆଉଟ୍···କହି ଦିଅ । ତମେ ଯଦି ଆଇଡିଆମାନଂକୁ ଏମିତି ନ କହି ରଖିବ ମୁଂଡ ଭିତରେ···ଟ୍ୟୁମର୍ ବି ହୋଇପାରେ ।

ମାଧବୀ

ନା, ମୁଁ ଭାବୁଥିଲି...ସେମାନେ 'ସ୍ୱର୍ଗଦୂତ' ନ ହୋଇ ଦୁଇଟି ସଂତାନ ବି ହୋଇପାରଂତି ।

କୃଷ୍ଣମୋହନ

ତା' ମାନେ···ସେଇ ସାତ ବର୍ଷ ତଳେ···ନା···ନା...ନଅ ବର୍ଷ ···, ଆଜିକାଲି ମୋର ସ୍ମୃତିଶକ୍ତି ଯେମିତି ଭାବରେ କମି କମି ଯାଉଛି···, ତମର ଗୋଟାଏ ଗର୍ଭପାତ ହୋଇଥିଲା, ଯଦି ସେଇଟା···

ମାଧବୀ

କିଂତୁ ତମେ ଟିକଏ ତଳେ ଏମାନଂକୁ 'ସ୍ୱର୍ଗଦୂତ' କହୁଥିଲ ଯେ— ତା' ମାନେ ମୋ ଗର୍ଭରେ ସ୍ୱର୍ଗଦୂତ'···

### କୃଷ୍ଣମୋହନ

ସେତେବେଳେ ମୁଁ ଭୁଲ୍ କରୁଥିଲି ବୋଧହୁଏ । ଅନେକ ଦିନ ତଳେ ଆମେ ଦିନେ ପୁରୀ ସମୁଦ୍ରକୂଳରେ ବୁଲୁ ବୁଲୁ ଗୋଟିଏ ବଙ୍ଗାଳୀ ପରିବାରର ଦୁଇଟି ଯାଆଁଳା ପୁଅ ଆମ ପାଖକୁ ଚାଲି ଆସିଥିଲେ । ତମେ ସେମାନଙ୍କୁ କୋଳକୁ ନେଲ । ଆଦର କଲ । ଫେରିବାଲାଠୁ ଚନାଚୁର୍ କିଣି ଦେଇଥିଲ···ତା ପରେ ସେ ଦୁଇଟା ଛୁଆ ତାଙ୍କ ବାପା-ମାଆଙ୍କ ପାଖକୁ ଯାଇଥିଲେ ତ ? ନା ଏଇଠି ଆସି

### ମାଧବୀ

ଆଶ୍ଚର୍ଯ୍ୟ !! ସେ ଦି'ଟା ପିଲା ଆସି ଆମ ଘରେ ବେଙ୍ଗ ହୋଇ ରହିଲେ କେମିତି ?

### କୃଷ୍ଣମୋହନ

ଅସମ୍ଭବ ନୁହେଁ । ତମେ ଶୋଇପଡ଼ିଲେ ବେଳେ ବେଳେ ବର୍ଷା ରାତିରେ ମୁଁ ଶୁଣେ ସେମାନେ···

### ମାଧବୀ

ମୁଁ ବି ବେଳେ ବେଳେ ମୋ' ପେଟ ଭିତରୁ ଗୋଟିଏ ଶିଶୁର କାନ୍ଦଣା ଶୁଣିପାରେ ।

### କୃଷ୍ଣମୋହନ

ନା' ପେଟ ଗରମ ହୋଇଯାଇଥିବ । (ଆଶ୍ଚର୍ଯ୍ୟ ହୋଇ) କିନ୍ତୁ ସେ ଦି'ଟା ଏଇଠି କେମିତି ରହିଲେ ? ହାଓ ଇଜ୍ ଇଟ୍ ପସିବଲ୍ ? ଯଦି କିଏ ପଚାରେ କାହିଁକି ?

### ମାଧବୀ

ସେମାନଙ୍କୁ 'ପିଙ୍ଗ୍ ପଙ୍ଗ୍' ଆଉ 'ନାଇଟ୍ କୁଇନ୍' ବୋଲି କିଏ ନାଁ ଦେଲା ?

### କୃଷ୍ଣମୋହନ

'ପିଙ୍ଗ୍ ପଙ୍ଗ୍' ଓ 'ନାଇଟ୍ କୁଇନ୍' ??

ମାଧବୀ

(ହସି) ଆଚ୍ଛା 'ପିଙ୍ଗ୍ ପଙ୍ଗ୍' ଗୋଟିଏ ପୁଅ ଆଉ 'ନାଇଟ୍ କୁଇନ୍' ଗୋଟିଏ ଝିଅର ନାଁ ?

କୃଷ୍ଣମୋହନ

ଇଏସ୍ ଇଟ୍ ଇଜ୍ ପସିବଲ୍ । କେମିତି ଜାଣିଲ ?

ମାଧବୀ

ମତେ 'ପିଙ୍ଗ୍ ପଙ୍ଗ୍' ଟିକଏ ସୁଂଦର ଦେଖାଯାଏ । ସତରେ ମୁଁ ତାକୁ ଭଲପାଏ । ଗୋଲ ଗୋଲ ଦୁଇ ଆଂଖିରେ ସେ ବଲ ବଲ କର ମତେ ଚାହୁଁଥାଏ···

କୃଷ୍ଣମୋହନ

କିଂତୁ ମୁଁ ଆଜ ସେଇଟାକୁ କାଟି ପକେଇଚ ।

ମାଧବୀ

(ଚମକି) ଏଁ !! ତୁମ······ତୁମେ ଜଣେ ନିଷ୍ଠୁର ହତ୍ୟାକାରୀ । କାହିଁକି ତୁମେ ମୋ ବେଂଗକୁ କାଟିଲ ? (କାଂଦିଲା ଭଳି)

କୃଷ୍ଣମୋହନ

'ପିଙ୍ଗ୍ ପଙ୍ଗ୍' ମୋ ପାଇଁ ଏକ ଗବେଷଣାର ବସ୍ତୁ···କେବଳ ଏକ ବସ୍ତୁ···ଜୀବନ ନୁହେ ।

ମାଧବୀ

(ଆଂଖିରେ ଲୁହ) ତୁମେ ନିଷ୍ଠୁର । ତୁମେ ବେଂଗ କାଟି କାଟି ହେଲେ ଜୀବନକୁ କଟେଇ ଦେଇ ପାରୁଛ । କିଛି ନଥିଲେ ବି ତୁମର ସ୍ୱପ୍ନ ଅଛି । ତୁମେ ଏଇ ଲାବୋରଟାରୀ ଭିତରେ ସବୁ ଚିଂତା ସବୁ ବୋଝକୁ କାଟି ପକାଉଚ···ହେଲେ ମୁଁ ? ଖାଲି ଘର କାମ ଛଡ଼ା··· ମୋର କିଛି ନାହିଁ । ଶେଷରେ ଏଇ ବେଂଗଟାକୁ ଟିକଏ ସ୍ନେହ କରୁଥିଲି । ସେଇଟାକୁ ବି ମୋ'ଠୁ ଛଡ଼େଇ ନେଇଗଲ ? (କାଂଦିଲେ କହିଁ କହିଁ ହୋଇ

॥ ଅଠଷଠି ॥

କୃଷ୍ଣମୋହନ

ରିଏଲି : ତମକୁ ଦେଖିଲେ ମୋର ଦୟା ଆସେ ।

ମାଧବୀ

(ଅତିଷ୍ଠ ହେଇ) ନା, ତମ ଦୟା ଉପରେ ମୁଁ ନିର୍ଭର କରୁନି । ମତେ କାହାର ଦୟାର ଆବଶ୍ୟକତା ନାହିଁ ।

[ କାହାର ମୁହଁରେ ଭାଷା ନାହିଁ, ହତଭମ୍ବେ ତଳକୁ ମୁଂଡ ପୋତି କରି ସମସ୍ତେ ବସି ରହିଛଂତି । ଟିକିଏ ପରେ ମାଧବୀ ଘର ଭିତରକୁ ଯାଇଛି । କୃଷ୍ଣମୋହନ ସେଇ ବେଂଗ ଓ ଟ୍ରେ' ନେଇ ଯାଇଛଂତି ବାହାରକୁ ମୃତ ବେଂଗ-ମାନଂକୁ ଫୋପାଡି ଦେଇ ଆସିଛଂତି । ନିଜର ସାର୍ଟଟି ଖୋଲି ତାକୁ ପଂଖା ଭାବେ ବ୍ୟବହାର କରିଛଂତି ]

କୃଷ୍ଣମୋହନ

ମାଧବୀ !! ମାଧବୀ !!!

ମାଧବୀ

(ପ୍ରବେଶ) କାହିଁକି ଏମିତି ରଡ଼ି ଛାଡୁଚ ?

କୃଷ୍ଣମୋହନ

ଝରକାଟା ଖୋଲିଦିଅ—

ମାଧବୀ

ଏ ଘରେ ଝରକା ନାହିଁ······!

କୃଷ୍ଣମୋହନ

ସେ ଦୁଆରଟା···ଘର ଭିତରେ ମୋତେ ଶ୍ୱାସରୁଦ୍ଧ ହେଇଗଲା ଭଳି ଲାଗୁଛି ।

॥ ଅଣସ୍ତସ୍ଥ ॥

ମାଧବୀ

ଟିକଏ ଅପେକ୍ଷା କର । ମୁଁ ଘର ଭାଇଂକ ପାଇଁ ଭାତ ବାଢ଼ୁଛି । ତମେ ଖାଇବନି କି ?

କୃଷ୍ଣମୋହନ

ପରେ ।

ମାଧବୀ

ନା, ବର୍ତ୍ତମାନ ଆସ ।

[ ମାଧବୀ ଗଲାପରେ ଟେବୁଲ ଉ... ଖୋଲିଲେ କୃଷ୍ଣମୋହନ । ବାହାର କଲେ ସେ ଧଳା ଫଲ୍‌ସ୍ ଦାଢ଼ି । ଟିକଏ ଲଗାଇବାକୁ ଚେଷ୍ଟା କଲେ । ହସିଲେ ଏବଂ ପରେ କଣ ଭାବି ତାକୁ ରଖିଦେଲେ । ଇତ୍ୟବସରରେ ପ୍ରବେଶ କଲେ ବୀରଭଦ୍ର ]

କୃଷ୍ଣମୋହନ

ଉଃ.. ଖୁବ୍‌ଷଣ ଗରମ ।

ବୀରଭଦ୍ର

ହଁ ଆଜ ଖୁବ୍‌ଷଣ ଗରମ ଲାଗୁଛି । ଏ ଘରଟା ଏମିତି ବଂଦ କାହିଁକି କରିଛଂତି ? ଝରକାଗୁଡ଼ା ଖୋଲିଦେଲେ ଚଳଂତାନି ?

କୃଷ୍ଣମୋହନ

ତମେ ଜାଣିନା...ଖୁବ୍ ଖରା ଗରମ ଭିତରେ ଏକୁଟିଆ ଅଂଧାର ଅସନା ଘର ଭିତରେ ଝରକା ବଂଦ କରି କଂବଳ ଘୋଡ଼େଇ ହୋଇ ଶୋଇବାରେ ଯୋଉ ଥ୍ରିଲ୍.........

ବୀରଭଦ୍ର

(ହସି) ଆପଣ ଶୋଇବା କଥା କହୁଛଂତି ନା ଷଡ଼ାଷ୍ଟକ ଯୋଗ ସାଧନା କଥା । ଆମେ ସବୁ ବାହାରେ ବୁଲିବା ମଣିଷ, ଖୋଲା

ପବନ, ଆକାଶ ଲ୍ୟାଂଡ୍‌ସ୍କେପ୍ ଭିତରେ ଆମେ ବଂଚନ୍ତୁ । ଏମିତ ବଂଦ ଘରେ ରହିଲେ ଶ୍ୱାସରୁଦ୍ଧ ହେଲାଭଳି ଲାଗେ ।

କୃଷ୍ଣମୋହନ

(ନିଜେ ଯେମିତ ଶ୍ୱାସରୁଦ୍ଧ ହେଲେ ! କାଂଭୁ ଲୁଗୁଇ) କାଂଭୁ ମୋର ତ ସେମିତି ମନେ ହୁଏନା···!! (ମାରବଡା) ଖୁବ୍ ବୁଲୁନ୍ତ ତା'ହେଲେ ? ମାଧବୀ କହୁଥିଲା କଣ ଡ଼ାକ୍ତର ଅଛ ବୋଲି ? କୋଉଠି ?

ବୀରଭଦ୍ର

ଡାକ୍ତର ? ନା, ମୁଁ ନୁହେଁ, ମୋର···ମାନେ···ଜଣେ ଅଂକଲ ଥିଲେ, ସେ ଡାକ୍ତର । ମୁଁ······

କୃଷ୍ଣମୋହନ

ତମେ ତା' ହେଲେ···?

ବୀରଭଦ୍ର

(ଅତି କଷ୍ଟରେ) ମୁଁ ଔଷଧପତ୍ର···

କୃଷ୍ଣମୋହନ

ସଂପର୍କରେ ଗବେଷଣା କରୁଚ ? (ନିଜେ ନବୁଝି) କାଂଭୁ ··

ବୀରଭଦ୍ର

ମୁଁ ଔଷଧପତ୍ର ବିକ୍ରୀ କରେ···ମେଡିସିନ୍ ଏଂଜେଣ୍ଟ୍···!

କୃଷ୍ଣମୋହନ

ଓଃ..(କାମରେ ମନଦେଲେ । କିଛି ସମୟ ପରେ) ତା'ହେଲେ ତମେ ଆକାଶ ସମୁଦ୍ର ଓ ଲ୍ୟାଂଡସ୍କାପ୍ ଭିତରେ ବୁଲୁଚ; ନାଇଁ ? ଆକାଶ ଓ ସମୁଦ୍ର କଣ ଭଲ ?

ବୀରଭଦ୍ର

ହଁ, ସେମିତି ।

॥ ଏକସ୍ତବ୍ଧ ॥

କୃଷ୍ଣମୋହନ

ଥରେ ତମ ସାଙ୍ଗରେ ବୁଲିଗଲେ ହୁଅନ୍ତା । କିନ୍ତୁ ଅନ୍ତତଃ ତମେ···

ବୀରଭଦ୍ର

ମୋର ଅଙ୍କଲ୍ କହୁଥାଆନ୍ତି ଡାକ୍ତର ହେବାପାଇଁ, କିନ୍ତୁ ସତରେ କଣ ଗୋଟାଏ ଡାକ୍ତରଖାନାରେ ବନ୍ଦୀ ହୋଇ ରହିବା ଜୀବନଟା ଭଲ ? ଅସଲ କଥା, ମତେ ଗୋଟାଏ ଜାଗାରେ ରହିବା ପାଇଁ ଆଦୌ ଇଚ୍ଛା ହୁଏନି···

କୃଷ୍ଣମୋହନ

ଏକାଗ୍ରତା ଅଭାବ । ଶୀର୍ଷାସନ କରିବା ଉଚିତ—ତମର ।

ବୀରଭଦ୍ର

ପଣ୍ଡିତ କଳ୍ପତରୁ ମଧ୍ୟ ସେମିତି କରୁଥିଲେ (ହସିଲେ—) କିନ୍ତୁ ଆସନ, ଯୋଗ ଉପରେ ମୋର ବିଶ୍ୱାସ ନାହିଁ । ମୋର ସ୍ୱାସ୍ଥ୍ୟ ଖୁବ୍ ସୁନ୍ଦର । ଏମିତି ଖୋଲା ଆକାଶ, ସମୁଦ୍ରର ତୀର ଆଉ ଫୁଲ ବଗିଚାରେ ବୁଲି ବୁଲି·· କିନ୍ତୁ ଗୋଟାଏ ଜାଗାରେ ଦୁଇ ତିନି ଦିନରୁ ବେଶି ଭଲ ଲାଗେନା ।

କୃଷ୍ଣମୋହନ

ନିକଟରେ ବହି···ଭଲ ବହି କିଛି ପଢ଼ାପଢ଼ି କରିଚ ?

ବୀରଭଦ୍ର

ଗୋଟାଏ କ୍ରାଇମ ଷ୍ଟୋରି···

କୃଷ୍ଣମୋହନ

ବୈଜ୍ଞାନିକ ଉପନ୍ୟାସ···?

ବୀରଭଦ୍ର

ବୈଜ୍ଞାନିକମାନଙ୍କର ଗୋଟାଏ ଉପନ୍ୟାସ ଅଛି ନା କଣ ?

॥ ବାସ୍ତବ ॥

କୃଷ୍ଣମୋହନ

ହଁ, ସିଓର୍ । 'ପୃଥିବୀ ନିକଟରେ ମଣିଷ'...'ମଂଗଳ ଗ୍ରହର... ଉପତ୍ୟକା' 'ପଶୁପକ୍ଷୀଂକର ଚଂଦ୍ର' · ଅସଲ କଥା ଏଇସବୁ ବହିରୁ ମୁଁ ଶସାର୍ଗ ପାଇଁ ନୂଆ ନୂଆ ଆଇଡିଆ ପାଏ ।

ବୀରଭଦ୍ର

ଅଚ୍ଛା...?

[କୃଷ୍ଣମୋହନ କଣ୍ଟୁ ସମସ୍ତ ଅଣୁବୀକ୍ଷଣ ଯଂନ୍ତ୍ର ନେଇ କଣ୍ଟୁ ଦେଖିବାକୁ ଲଗିଲେ]

ଅଂକଲ୍ ମେ.ର ଅନେକ ଭଲ ଭଲ ବହି ପଢ଼ଂନ୍ତି । ତାଂକର ଡ୍ରଇଂ ରୁମ୍‌ରେ ପ୍ରାୟ ପାଂଚଟି ମସ୍ତବଡ଼ ଆଲ୍‌ମିରା । କେବଳ ବହି ଥାକରେ ସଜା ହୋଇଛି । ମତେ ସେ ବେଳେ ବେଳେ ସାହାଯ୍ୟ କରଂନ୍ତି । କିଂତୁ ଅସଲ କଥା ହେଲା... ମୁଁ ଖୋଲା ଆକାଶ ଆଉ ସମୁଦ୍ରକୁ ଭଲ ପାଏ । ତେଣୁ ଘର ଭିତରେ ଏକା ଏକା ବସି ପଢ଼ିବା...

କୃଷ୍ଣମୋହନ

(ଅଣୁବୀକ୍ଷଣ ଯଂନ୍ତ୍ରଟି ଭିତରୁ ଆଖି ବାହାର କରି ଆଣି) ଆଚ୍ଛା ଗୋଟାଏ ପ୍ରଶ୍ନ ।

ବୀରଭଦ୍ର

କ'ଣ...?

କୃଷ୍ଣମୋହନ

ଗୋଟାଏ ଆଖି ବଦଳରେ ଯଦି ଦୁଇ ଲକ୍ଷ ଟଂକା ଦିଆଯାଏ ତା' ହେଲେ ତମେ ଟଂକା ନେବ ନା ଆଖି ଦେବ ?

ବୀରଭଦ୍ର

(ଟିକିଏ ଚିଂତା କରି) ବାଁ ଆଖି ନା ଡାହାଣ ଆଖି ?

॥ ଚେସ୍ତର ॥

କୃଷ୍ଣମୋହନ

ଯେ କୌଣସି ଗୋଟାଏ···

ବୀରଭଦ୍ର

ତା' ହେଲେ ମୋର ଟଂକା ଦରକାର । କାରଣ ମୋର ଅଂକଲ୍ କୁହଂନ୍ତି ନଜେ ଗୋଟାଏ ମେଡ଼ିସିନ୍ ଦୋକାନ କରିବା ପାଇଁ । ଦୋକାନ ନହେଲେ ବି ଗୋଟାଏ ଫ୍ୟାକ୍ଟେରି । କିଂନ୍ତୁ ମୋ' ଭଳି ଖାମଖିଆଲି ଲୋକ କ'ଣ ସହରେ···ଗୋଟାଏ ଫ୍ୟାକ୍ଟେରି ଚଳେଇ ପାରିବ ?

କୃଷ୍ଣମୋହନ

ତମ ଅଂକଲ୍ କ'ଣ ଖୁବ୍ ବଡ଼ ଲୋକ ?

ବୀରଭଦ୍ର

ହଁ । ତାଂକର ଯଥେଷ୍ଟ ପଲିଟିକାଲ୍ ଇନ୍ଫ୍ଲୁଏନ୍ସ !···ଏସ୍କାର୍ କଂଡ଼ିଶନ୍ଡ ଘର । ମସ୍ତବଡ଼ ଆଲମାରିରେ ଖାଲି ବହି ଆଉ ବହି···ଯଥେଷ୍ଟ ଟଂକା···କିଂନ୍ତୁ ମୁଁ ଔଷଧ ବ୍ୟବସାୟ କରି ପାରିଲିନ । କାରଣ ଥରେ ନଶିଷ୍ଠ ସମୁଦ୍ର, ଆକାଶ, ଫୁଲ ବଗିଚା ଏବଂ ଖୋଲି ପବନମାନଂକର ସ୍ପର୍ଶ ପାଇଲେ ଆଉ କଳ କାରଖାନ ର ଧୂଆଁ, ଅଫିସର ବଂଦାଘର ଭିତରେ ଶ୍ୱାସରୁଦ୍ଧ ହୋଇ ବଂଚି ପାରେନା ।

କୃଷ୍ଣମୋହନ

ଓଃ ! ଭୀଷଣ ଗରମ । ଏମିତି ଗରମ ଆଉ ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ଗବେଷଣା କରିବା ନିହାତି ଅସଂଭବ । ବିଜ୍ଞ ଲୋକଂକ ପାଇଁ ଏ ଦେଶରେ ଅନୁକୂଳ ଅବସ୍ଥା ନାହିଁ ।

ବୀରଭଦ୍ର

ସେଇଥିପାଇଁ ମୁଁ କହୁଥିଲି, ଟଂକା ଦରକାର । ଟଂକା ଥିଲେ ଆପଣ ମାଢଙ୍କୁ ନେଇ ସମୁଦ୍ରକୂଳକୁ ବୁଲି ଯାଇ ପାରଂତେ । ନୂଆ ନୂଆ ଅଇଡ଼ିଆ ଆପଣଂକ ମୁଂଡ଼କୁ ଆସଂତା ।

॥ ଚନ୍ଦ୍ରସ୍ତର ॥

କୃଷ୍ଣମୋହନ

କିଂତୁ ମାଧବୀଙ୍କୁ ସେଇ ସମୁଦ୍ରକୂଳ···

ବୀରଭଦ୍ର

ସମୁଦ୍ର, ଆକାଶ ଆଉ ଲ୍ୟାଂଡସ୍କେପ୍ · ଏ ତିନିଟା ଭିତରେ ମୁଁ ଏକ ଅଦ୍ଭୁତ ସମନ୍ୱୟ ଖୋଜି ପାଏ···ମାନେ ଅଧିକାଂଶ ସମୟ ମତେ ଏକା ଏକା ବୁଲିବାକୁ ପଡ଼େ···ବସ୍ କିଂବା ଟ୍ରେନ୍‌ର ଝରକା ଦେଇ ମୁଁ ଯେଇ ଲ୍ୟାଂଡସ୍କେପ୍ ଭିତରକୁ ଖସି ଚାଲିଯିବା ପାଇଁ ଭାବେ ।

କୃଷ୍ଣମୋହନ

(ସାର୍ଟର ବୋତାମ ଖୋଲିଲେ) ବାଃ ! ଅଦ୍ଭୁତ ! ସୁଂଦର !

ବୀରଭଦ୍ର

କ'ଣ ?

କୃଷ୍ଣମୋହନ

ଏଇ···ତମର ଲ୍ୟାଂଡ଼ସ୍କେପ୍···ସମୁଦ୍ର ଆଉ ଆକାଶ···

ବୀରଭଦ୍ର

ନିଶ୍ଚୟ; ସେଇଥିପାଇଁ ଅଂକଲ୍ ଯେବେ କହିଲେ ବାହା ହେବା ପାଇଁ···ମୁଁ ମନା କଲି । ମୁଁ···ମାନେ କୌଣସି ଦାୟିତ୍ୱର ବୋଝ ଅତି ସହଜରେ ମୁଂଡ ଉପରକୁ ନେଇ ପାରେନା···ବିବାହ ସ୍ୱାଧୀନ ଇଚ୍ଛାର ଏକ ପ୍ରତିବଂଧକ ।

କୃଷ୍ଣମୋହନ

ସେଇଥିପାଇଁ ସ୍ୱାମୀ ବିବେକାନଂଦ ବିବାହକୁ ଘୃଣା କରୁଥିଲେ ।

ବୀରଭଦ୍ର

ବିବାହ କଲେ···ଅବଶ୍ୟ ଅଂକଲ୍ କହୁଥିଲେ ଅନେକ କଥା—
ଏତେ କଥା ଶୁଣିବା ପାଇଁ ମୋ ମୁଂଡରେ ଜାଗା କାହିଁ ? ଏମିତି

ଆକାଶ ଓ ସମୁଦ୍ର ଭିତରେ ଜୀବନ ସାରା ଏକା ଏକା ମିଶିପିବା ଭଲ । ରବିବାରର ସକାଳଗୁଡ଼ିକରେ ସମୁଦ୍ରକୁ ଦେଖିଲେ ମୋର ଲହଡ଼ି ଭାଂଗିବା ପାଇଁ ଇଚ୍ଛା ହୁଏ ।

କୃଷ୍ଣମୋହନ

ମଦ ପିଇ ନାଚବା ପାଇଁ...?

ବୀରଭଦ୍ର

ଆପଣ ଜାଣଂତି ? ସମୟେ ସମୟେ ଶାଢ଼ୀ ପିଂଧିବା ପାଇଁ ମୋର ଇଚ୍ଛା ହୁଏ ।

କୃଷ୍ଣମୋହନ

ଦ୍ୟାଟ୍ସ୍ ଫାଇନ୍ !

ବୀରଭଦ୍ର

କିଂତୁ ମୁଁ ବୁଝିପାରୁନ ଆପଣ ଏଇଠି, ଏଇ ଅଂଧାରିଆ କୋଠରୀ ଭିତରେ ବେଂଗମାନଂକୁ ନେଇ କେମିତି ଜୀବନ ସାରା କଟେଇ ଦେଇ ପାରୁଛଂତି !

କୃଷ୍ଣମୋହନ

'ମଣି' ଖୋଜୁଚି ।

ବୀରଭଦ୍ର

ଡ୍ୟାମ୍ ଇଟ୍ ।

କୃଷ୍ଣମୋହନ

ତମକୁ ଦେଖିଲା ପରେ ମତେ ଭାରି କ୍ଲାଂତ ଲାଗୁଛି ।

ବୀରଭଦ୍ର

ମଲ୍ଟି ଭିଟାମିନ୍ ଟାବ୍ଲେଟ୍ ଖାଆଂତୁ...ଆମ କଂପାନୀର ଏଇଟା ଏକ ଭଲ ଔଷଧ...

କୃଷ୍ଣମୋହନ

ସେଗୁଡ଼ା ଖାଇଲେ ଆହୁରି ଦୁର୍ବଳ ଲାଗିବ ।

॥ ଛଅସ୍ତର ॥

ବୀରଭଦ୍ର

ଆପଣ ନିଜେ ନିଜେ ଜୀବନଟାକୁ ଏଇଠି ଅଂଧାର ଭିତରେ ନଷ୍ଟ କରୁଛଂତି । ତା' ସଂଗେ ସଂଗେ ମାଧବୀର ଜୀବନ ମଧ୍ୟ ।

କୃଷ୍ଣମୋହନ

ମାଧବୀ ମୋତେ ବ୍ୟସ୍ତ କରୁଚି ।

ବୀରଭଦ୍ର

ଆପଣଂକୁ ଦେଖିଲେ ମୋର ଘୃଣା ହେଉଚି । ଆପଣ ସାରୁଗଛ ମୂଳେ ବେଂଗ ଭଳି ବସି ଏଇଠାକୁ ପୃଥିବୀ ବୋଲି ଭାବୁଛଂତି । ଆପେ ଆପେ ରାଜା ବୋଲି ଭାବୁଛଂତି ।

କୃଷ୍ଣମୋହନ

ମୋ' ଘୂଷୁରି ଗାଡ଼ିଆର ରଜା ମୁଁ । ମୁଁ ଅପ୍ରତିହତ ହେବାକୁ ଚାହେଁ ।

ବୀରଭଦ୍ର

(ହସିଲେ) ଆପଣ ଆକାଶ ଆଉ ସମୁଦ୍ର ଦେଖି ନାହାଂତି । ବରଫ ଆଉ ଅରଣ୍ୟ ଦେଖିନାହାଂତି...ନାଲି, ନେଳି ଇଂଦ୍ରଧନୁର ଆକାଶ ...ଶାର୍କ କଂକଡ଼ା ଓ ତିମି ମାଛର ସମୁଦ୍ର...ସବୁଜ ଓ ବର୍ଣ୍ଣବହୁଳ...ଶାଳ ପିଆଶାଳର ଅରଣ୍ୟ...ଧାଡ଼ି ପରେ ଧାଡ଼ି... ପାହାଚ ପାହାଚ ହୋଇ ଉପରକୁ ଉଠିଥିବା ରହସ୍ୟ...! ଏଇ ବେଂଗ ରାଜ୍ୟରୁ ଉଠି ଆସି ଆପଣ ଏ ସବୁ ଦେଖିବା ଉଚିତ ।

କୃଷ୍ଣମୋହନ

ତମେ ଏଇଠି ବସ । ମୁଁ ଖାଇଦେଇ ଆସେ, ଆମେ ଗପିବା ।

ବୀରଭଦ୍ର

ନିଶ୍ଚୟ ।

କୃଷ୍ଣମୋହନ

ମୁଁ ତୁମଠାରୁ ସମୁଦ୍ର ଆଉ ଆକାଶର କାହାଣୀ ଶୁଣିବି ।

॥ ପଟକ୍ଷେପ ॥

Source: Author, Digitized by PPRACHIN, SOA

ବୀରଭଦ୍ର

ଆଉ ମୁଁ ତୁମର ମଂଡୂକ ଉପାଖ୍ୟାନମ୍

କୃଷ୍ଣମୋହନ

ହାଃ...ହାଃ...ହାଃ...(ଭିତରକୁ ଯାଉ ଯାଉ) ମାଧବୀ... ! ତମଙ୍କ ତଥାକଥିତ ଭାଇ ଏକୁଟିଆ ବସିଲେ । ତମେ ତାଂକ ସାଂଗରେ ଗପିପାର...ଆଇ ମିନ୍ . ମୁଁ ବାଥ୍ ରୁମ୍ ରୁ ଆସି ଖାଇଦେଇ ଯିବି । ମୋ' ପାଇଁ ଭାତ ବାଢ଼ି ଦେଇଥିବ ।

[ କୃଷ୍ଣମୋହନ ଭିତରକୁ ଗଲେ । ବୀରଭଦ୍ର ସେମାନେ ବସି ରହିଲେ, କୃଷ୍ଣମୋହନଂକ ଗତିପଥକୁ ଚାହିଁ । ମାଧବୀ ପ୍ରବେଶ କଲେ ]

ବୀରଭଦ୍ର

ତମକୁ ବୈଜ୍ଞାନିକ ମୋ' ସାଂଗରେ ଏନ୍‌ଗେଜ୍ କରିଦେଇ ଗଲେ !

ମାଧବୀ

(ହସି ହସି ) ଦୟାରେ ପ୍ରତିମୂର୍ତ୍ତି !!

ବୀରଭଦ୍ର

ତମ ପ୍ରତି ବୈଜ୍ଞାନିକର ବେଶ ଦୟା ତ ଦେଖୁଛି ।

ମାଧବୀ

(ଆସ୍ତେ ଆସ୍ତେ) ଏ' ! ତୁମେପୁଣି ମତେ 'ତମେ' ବୋଲି ଡାକୁଚ ? ରାସ୍ତା ସାଫ୍ ବୁଝେଇଲ ; ତୁ' ଡାକିବା ପାଇଁ...

ବୀରଭଦ୍ର

ପୁରୁଣା ଅଭ୍ୟାସଟା ରହିଯାଇଛି ।

ମାଧବୀ

ପୁରୁଣା ଅଭ୍ୟାସ ଛାଡ଼ିବାକୁ ପଡ଼ିବ ।

॥ ଅଠସ୍ତର ॥

ବୀରଭଦ୍ର

ନ ଛାଡ଼ିଲେ ?

ମାଧବୀ

ଅବସ୍ଥା ସାଂଘାତିକ ହୋଇପାରେ ...ମାନେ...ସିଏ ବେଂଗମାନଙ୍କୁ ଛାଡ଼ି ତମ ଉପରେ ଗବେଷଣା ଚଳେଇବେ ।

ବୀରଭଦ୍ର

ତାଙ୍କୁ ସ୍ଲିପିଂ ଡ୍ରଗ୍ ଖୁଆଇ ଦିଆଯାଉ ।

ମାଧବୀ

ତମେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛ !

ବୀରଭଦ୍ର

ତମେ ଆଗଭଳି ସେମିତି ଅପରିବର୍ତ୍ତିତ ରହିଚ ମାଧବୀ । ଏଇ ବାର ବର୍ଷ ଭିତରେ ତମର କିଛି ବଦଳି ପାରିଲାନି ?

ମାଧବୀ

ତମେ କ'ଣ ବଦଳି ଯାଇଚ ବୋଲି ଭାବୁଚ ?

ବୀରଭଦ୍ର

ପ୍ରତି ବର୍ଷ, ପ୍ରତି ମାସ, ପ୍ରତିଦିନ ମୁଁ ବଦଳିବା ପାଇଁ ଚାହୁଁଚି । କାରଣ ମୁଁ ଗୋଟାଏ ସାଧାରଣ ଅବସ୍ଥାକୁ ଆଦୌ ସହ୍ୟ କରି ପାରୁନି । ଏମିତିକି ନିଜ ମୁହଁଟାକୁ ଦର୍ପଣରେ ସବୁଦିନ ଦେଖିଲେ ମୁଁ କ୍ଲାନ୍ତ ହୋଇପଡେ ।

ମାଧବୀ

ମୁହଁଟାକୁ ବଦଳାଇବାର କୌଣସି ଉପାୟ ତ ନାହିଁ ।

ବୀରଭଦ୍ର

ସେଇଥିପାଇଁ ମୁଁ ଏତେ ଅସହାୟ ମନେ କରୁଛି ମାଧବୀ, ଏତେ ସହର...ଏତେ ହୋଟେଲ... ଏତେ ସମୁଦ୍ର, ଏତେ ଆକାଶ ଭିତରେ

ମୁଁ ନିଜକୁ ହଜାଇ ଦେବା ପାଇଁ ଚାହୁଁଛି । ଅଥଚ ପ୍ରତି ନିର୍ଜନ ମୁହୂର୍ତ୍ତରେ ମୁଁ ମୋ' ସତ୍ତାକୁ ଭୁଲି ପାରୁନି ।

ମାଧବୀ

ବାହା ହେଲନି ? ପୃଥିବୀରେ କ'ଣ ଝିଅଂକ ଅଭାବ ?

ବୀରଭଦ୍ର

ନିର୍ଜନତାକୁ ଯଦି ଏତେ ସହଜରେ ଭାଂଗି ହେଉଥାଂତା ।

ମାଧବୀ

ଫେର ଭାଇ; ମନର କ୍ଷତ ଶୁଖିବା ପାଇଁ ବାରବର୍ଷର ସମୟ ଯଥେଷ୍ଟ

ବୀରଭଦ୍ର

ତମେ ମତେ ବିଶ୍ୱାସ କର ମାଧବୀ । ତମେ ବାହାହେଲା ଦିନଠୁ ମୁଁ ନିଜଠୁ ତୁମକୁ ମୁକ୍ତ କରିବା ପାଇଁ ଅନେକ ଚେଷ୍ଟା କରିଛି— ଯାଯାବର ହୋଇ ଅନେକ ବୁଲିଛି । କିଂତୁ --

ମାଧବୀ

କିଂତୁ ମୋ' ଭଳି ଏକ ନିର୍ଜନ କୋଠରୀରେ ବନ୍ଦୀ ହୋଇ ରହିବା ଅପେକ୍ଷା ଯାଯାବର ଜୀବନ ଅନେକ ଭଲ ।··· (ଟିକିଏ ପରେ) ତୁମର ମନେ ଅଛି ବୀର ଭାଇ ? ପିଲାଦିନର ସେହି ନିର୍ଜନ ମଧ୍ୟାହ୍ନ ଗୁଡିକ ? ସେଇ ଗ୍ୟାରେଜ୍ ଘର - ପେଟ୍ରୋଲ୍ ଗଂଧ - ସେହି ବୋହୂବୋହୂକା ଖେଳ···

ବୀରଭଦ୍ର

ପିଲା ! ସେ ଗୁଡ଼ା ଶୁଣିଲେ ମୁଁ ହଠାତ୍ 'ସିକ୍' ମନେ କରିବି ।

ମାଧବୀ

ଚାଲ, ଆଜି ତା' ହେଲେ ଟିକିଏ ବାହାରୁ ବୁଲି ଆସିବା ।

ବୀରଭଦ୍ର

ତମ ବୈଜ୍ଞାନିକ ?

ମାଧବୀ

ତାଂକୁ ବି ଟାଣି ନେଇଯିବା । ସ୍ୱର୍ଗର ଏକଠି ତାଂକ ବେଂଗମାନଂକୁ ନେଇ···

ବୀରଭଦ୍ର

ରାବିଶ୍ !! ତମ ଭଳି ଝିଅ କେମିତି ଏ ବେଂଗମାନଂକୁ ନେଇ ଜୀବନ କାଟୁଚି ଭାବିଲେ ଆଶ୍ଚର୍ଯ୍ୟ ଲାଗୁଚି···

ମାଧବୀ

ଆମେ ପାର୍ଯ୍ୟ ବାର ବର୍ଷର ଶାଂତିପୂର୍ଣ୍ଣ ସହାବସ୍ଥାନ କରିଛୁ ।

ବୀରଭଦ୍ର

ଶୁଣି ଖୁସି ହେଲି ।

[ ବୀରଭଦ୍ର ମୁହଁ ବୁଲାଇଲେ ବାହାରକୁ । କିଛି ସମୟ ପରେ ଉଠି ଆସିଲେ, ଅର୍ଥାତ ମାଧବୀଠାରୁ ଦୂରେଇ ଆସିଲେ । ପରଦା ଖୋଲିଲେ । ସାମନାରେ ସୁଂଦର ଆକାଶ ଦେଖାଗଲା । ]

ମାଧବୀ

ବୀର ଭାଇ ?

ବୀରଭଦ୍ର

(ପଛକୁ ନ ଚାହିଁ) ତମେ ଜଂଗଲ ଦେଖିଛ ମାଧବୀ ?

ମାଧବୀ

ଆମ କଲେଜଟା ଗୋଟିଏ ପାହାଡ଼ ପାଖରେ ଥିଲା— । ନାହିଁ ?

ବୀରଭଦ୍ର

ଜଂଗଲ ଦେଖିଲେ ମତେ ଚୁପ୍ କିନା ତା' ଭିତରେ ଗଳି ପଶିଯିବା ପାଇଁ ଇଚ୍ଛା ହୁଏ—

ମାଧବୀ

(ହସିକି) ସତେ ? ତା' ହେଲେ ମୁଁ କହିବ ଜଂଗଲୀ ହେବା ପାଇଁ ତମର ଇଚ୍ଛା ପ୍ରବଳ !

ବୀରଭଦ୍ର

(କଂଠରେ ଉତ୍ତେଜନା ସାମାନ୍ୟ) ଜଂଗଲର ରହସ୍ୟ ଭିତରେ ମିଶିଯିବା ପାଇଁ···କଂଣ୍ଠ ମୋର କଣ ହେଉଛି ଜାଣ ? ତମେ ଜଂଗଲଠାରୁ ବ ଅଧିକ ରହସ୍ୟମୟୀ···

ମାଧବୀ

ତା' ହେଲେ ମୋ' ଭିତରେ···

ବୀରଭଦ୍ର

ତମେ ଅଭେଦ୍ୟ··· ! ତମେ···

ମାଧବୀ

ମୁଁ (ହସି ହସି) ଜଂଗଲ ନୁହେ—ମରୁଭୂମି ।

ବୀରଭଦ୍ର

ତଥାପି ତମେ କହୁଚ ତମର ଦାଂପତ୍ୟ ଜୀବନ ସୁଖମୟ !!

ମାଧବୀ

ତମେ ମତେ ଆଘାତ କରୁଚ ବୀର ଭାଇ !!

ବୀରଭଦ୍ର

(ହସିଲେ) କାରଣ ତମେ ମତେ ଲୁଚେଇବାକୁ ଚେଷ୍ଟା କରୁଚ । ଅନେକ ଦିନ ପରେ ତମ ଚିଠି ପାଇ ମୁଁ ଭାବିଥିଲି ତମେ ବୈଜ୍ଞାନିକ ସ୍ୱାମୀଂକୁ ନେଇ କେତେ ଖୁସିରେ ଅଛ !

ମାଧବୀ

ମୋର ତାଂକ ପ୍ରତି ଅଭିଯୋଗ ଅଛି ବୋଲି ତମେ ମନେ କରୁଚ ?

ବୀରଭଦ୍ର

ତମେ ଭାରତୀୟ ନାରୀ···ଯଥା—ଦ୍ୱିବର୍ଣ୍ଣସ୍ୟ ମଂଦୋଦରୀ··· ।

ମାଧବୀ

ତଥାପି ମୁଁ ହିଂଦୁ ନାରୀର ଏକ ଫସିଲ୍ ।

॥ ବତ୍ତୀଅଣି ॥

ବୀରଭଦ୍ର

ଫେଟୋଗ୍ରାଫକୁ ନେଇ କେତେ ଦିନ ତମେ ନିଜକୁ ଠକିବ ?

ମାଧବୀ

ସାର୍ ଭାଇ !!

ବୀରଭଦ୍ର

ଅନ୍ତତଃ ଏଇ ମୁହୂର୍ତ୍ତରେ ତମେ ମତେ 'ସାର ଭାଇ' ବୋଲି ଡ଼ାକିବା ବନ୍ଦକର ମାଧବୀ ! ବରଂ ଆସ, ଆମେ କିଛି ସମୟ ପାଇଁ କେବଳ ଜଣେ ପୁରୁଷ ଓ ଜଣେ ସ୍ତ୍ରୀ ହୋଇ ରହିବା ।

ମାଧବୀ

ସ୍ତ୍ରୀ ହୋଇ ମୋର ଅଲଗା ପରିଚୟ ନାହିଁ । ମୁଁ ମିସେସ୍ ମହାପାତ୍ର (ହସିଲା)

ବୀରଭଦ୍ର

ମୁଁ ସେ ବର୍ଷ ହଠାତ୍ ଲୁଚି ଦାର୍ଜିଲିଂ ପଳେଇ ଯାଇଥିଲି ଏବଂ ତମେ ଏଇ ବୈଜ୍ଞାନିକ ସହିତ...

ମାଧବୀ

ମୁଁ ଶେଷ ପର୍ଯ୍ୟନ୍ତ ତମକୁ ଚାହିଁ ରହିଥିଲି । ମୋର ତମ ଉପରେ ଭରସା ଥିଲା । କିନ୍ତୁ ...

ବୀରଭଦ୍ର

ମୋ' ଅଙ୍କଲ୍ ମୋତେ ବିଜନେସ୍ କରିବାକୁ କହିଲେ ଏବଂ ମୁଁ ଖୋଲା ଆକାଶ ଏବଂ ସମୁଦ୍ରକୁ ଭଲ ପାଉଥିଲି...

ମାଧବୀ

ତମେ କାପୁରୁଷ । ମତେ ଲୁଚି ନ କହି ଦାର୍ଜିଲିଂ ପଳେଇଗଲ ।

ବୀରଭଦ୍ର

ତମକୁ କହିବା ପାଇଁ ସମୟ ପାଇ ନଥିଲି ।

॥ ଯବନିକା ॥

ମାଧବୀ

ମିଛ କଥା । ତମେ ବିବାହ କରିବା ପାଇଁ ଗୃହୁଁ ନଥିଲ । କେବଳ ମୋ' ସାଂଗରେ ଛଳନା କରୁଥିଲ ।

ବୀରଭଦ୍ର

ତମ ଗୁଣ ମାଧବୀ । ମୋର ଆଦୌ ଧାରଣା ନଥିଲା ତମ ଯୌବନଟା ଏମିତି ବେଂଗମାନଂକ ସାଂଗରେ ବିତିଯିବ ବୋଲି ।

ମାଧବୀ

(ଅଭିମାନ) ତମେ ମିଛୁଆ, ଠକ । ସେଇଥିପାଇଁ—

ବୀରଭଦ୍ର

(ଭାବ ବିହ୍ୱଳ ହେଲା ଭଳି) ଆଜ ଏଇ ବେଂଗମାନଂକୁ ଦେଖି ମୋର ମନେ ପଡୁଛି…ଅନେକ ଦିନ ତଳେ…ଏକ ବର୍ଷା ରାତିରେ ଏମିତି ଆମେ…ଠିକ୍ ଏମିତି ବେଂଗ ରଡି…ତମେ ଥିଲ ପ୍ରିଇଉନିଭରସିଟିର୍ ଛାତ୍ରୀ…ଅଂକଲ୍ ମତେ ଡାକ୍ତରୀ ପଢ଼ିବା ପାଇଁ କହିଲେ ଏବଂ ମୁଁ ମନା କଲି…ତମେ ସେଇ ମନଫୁଲାଂଠ କୁଂଦ ତଳେ ସେଇ ବର୍ଷା ଭିଜା ଅଂଧାର ରାତିରେ

ମାଧବୀ

ତମେ ଏତେ ଦିନର ସେଇ କଥାଗୁଡ଼ାକ ମନେ ରଖିଚ ?

ବୀରଭଦ୍ର

(ହସି ହସି ଯେମିତି ତାର ସ୍ମରଣଶକ୍ତି ଅତି ପ୍ରଖର) ପଚାରିଲେ ମୁଁ ଏଇକ୍ଷଣି କହି ଦେଇପାରେ କେଉଁ ତାରିଖ, କେଉଁ ବାର୍… କେତେବେଳେ ତମର ମୋର ପ୍ରଥମ ସାକ୍ଷାତ ହୋଇଥିଲା ।

ମାଧବୀ

(ଆଶ୍ଚର୍ଯ୍ୟ ହୋଇ) ସତେ ଶୀର ଭାଇ ! ଆମର ପ୍ରଥମ ସାକ୍ଷାତ କେଉଁଠି ହୋଇଥିଲା ?

॥ ଚଉରାଅଶି ॥

ବୀରଭଦ୍ର

ସମ୍ବଲପୁରରେ । ଗୋଟେ ଶ୍ରେଣୀ ଘରେ । ତମେ ସେତିକି ବେଳେ ଫ୍ରକ୍ ପିନ୍ଧିଥିଲ ଏବଂ ଖୁବ୍ ପାଚିଲା କଦଳୀ ଖାଉଥିଲ । ମୁଁ ବରଫ ଏବଂ ସର୍ବତ ବାଣ୍ଟୁଥିଲି । ତମେ ମୋ ପାଖକୁ ଲୁଚି—ଲୁଚି ଆସି ଦହି ସର୍ବତ ମାଗି ତମ ମାଆଙ୍କଠାରୁ ଗାଳି ଖାଇଥିଲ । ତା' ପରେ...

ମାଧବୀ

ଇସ୍ କି ମିଛ ?? ମୁଁ ଦି' ମହଲା ଛାତ ଉପରେ ବସି ଗୀତ ଗାଇଲା ବେଳେ ତମେ ଲୁଚି ଲୁଚି ଆସି ମତେ ଗିଲାସେ ଦହି ସର୍ବତ ଯାଚିଲ !!

ବୀରଭଦ୍ର

କିନ୍ତୁ ମୁଁ ସେ ଗିଲାସଟା ତମ ପାଇଁ ଆଣି ନଥିଲି । ନିଜେ ପିଇବା ପାଇଁ । ତମେ ଭାବିଲ ସେମିତି ଏବଂ ମୋ'ଠୁ ଛଡ଼ାଇ ନେଲ...

ମାଧବୀ

ମୋ' ବୋଉ ଲୋ' !! ଏମିତି ଡାହା ମିଛ ମଧ୍ୟ କୁହନ୍ତି ପୁଅମାନେ ...!! ତମେ ଦହି ଗିଲାସଟା ଧରି 'ନିଅ', 'ନିଅ' ବୋଲି ମୋ ଆଗରେ ନେଫେଡ଼ାଙ୍କ ଭଳି ହେଲ...ଅଭଦ୍ରଙ୍କ ଭଳି...

ବୀରଭଦ୍ର

(ମନେ ପକେଇ) କିନ୍ତୁ ମୁଁ ସେତିକି ବେଳକୁ ତ ଅଭଦ୍ର ନଥିଲି !!

ମାଧବୀ

ସିଗାରେଟ୍ ଖାଉଥିଲ, ଝିଅଙ୍କ ବ୍ଲାଉଜ୍ କନାରେ ଟି-ସାର୍ଟ ପିନ୍ଧୁଥିଲ ଆଉ ତମ ମୁହଁ ସାରା ସେତିକି ବେଳେ ବ୍ରଣ ଉଠିଥିଲା, ତମକୁ ଛତରା ନ କହି ଆଉ କ'ଣ କହିଥାଆନ୍ତି କହିଲ ?

ବୀରଭଦ୍ର

ତମର ତା' ହେଲେ ସବୁ କଥା ମନେ ଅଛି ?

॥ ପଂଚାଅଣି ॥

### ମାଧବୀ

(ଲାଜ ଲାଜ ହୋଇ) ମୋର କାହିଁକି ରହିବ ନ'··· ? ଏମିତି କଥା ପଡ଼ିଲା ତ କହି ଦେଲି ।

### ବୀରଭଦ୍ର

କହୁ କହୁ କହି ଦେଲ ?

### ମାଧବୀ

ହଁ (ହସିଲା···) ମୋର ଠିକ୍ ମନେ ଅଛି ତମେ ମୋ' ପଛରେ···

### ବୀରଭଦ୍ର

କିଂତୁ ତମେ ପ୍ରଥମେ ସେ ଦିନ ଖରାବେଳେ ଆସି ମତେ ବରଫ ସର୍ବତ୍ ମାଗିଥିଲ ଆଉ ମୁଁ ଟେକାଏ ବରଫ ତମ ହାତରେ ଧରାଇ ଦେଇଥିଲି ଏବଂ ତମ ହାତ ଥଣ୍ଡାରେ କାଲୁଆ ହୋଇ ଯାଇଥିଲା···ଏବଂ···

### ମାଧବୀ

ହଉ ରଖ ରଖ । ଆଉ ବେଶୀ କହିବା ଦରକାର ନାହିଁ··· । ତମେ ସେମିତି ଅଭଦ୍ର ହୋଇ ଅଜି ପର୍ଯ୍ୟନ୍ତ ରହିଚ···ବାହା ସାହା ନ ହୋଇ—

### ବୀରଭଦ୍ର

ତମକୁ ମୁଁ କହୁଚି ନା···ମତେ ଏଇ ଘରସଂସାର ଭଲ ଲାଗେନା । ଅଂଧାର, ଓଜଣ, ମଶା, ରୁଟି, ଡାଲମା, ଓଢ଼ଣା—ଖାଲି ଦେହ, ଝାଳ, ଲୁଣିଆ···ଟେଷ୍ଟ ଛୁଆ···ଗୋଟାଏ···ଦୁଇଟା···ବିଛଣା ଉପରେ ଝାଡ଼ା···ପଖାଳ ଭାତ ଭିତରେ ପରସ୍ରା···ଶାଢ଼ୀ ପାଇଁ ବରାଦ···ଚକୋଲେଟ···ଇସ୍···ହରିବଲ୍ !! (କିଛି ସମୟ ପରେ) ମୁଁ ଆକାଶ ଓ ସମୁଦ୍ର ପିଆସୀ···ମୁଁ ମୁକ୍ତ ଗୃହେଁ···

### ମାଧବୀ

ମୁଁ ଜାଣେ । କାଳେ ମୁଁ ତୁମକୁ ବାଂଧି ପକେଇବି ଭାବି ଦାର୍ଜିଲିଂ ଦୌଡ଼ି ପଳେଇଲ—

॥ ଛପ୍ପାଅଣି ॥

ବୀରଭଦ୍ର

ତା' ହେଲେ ଆଜି କେମିତି ଆସିଲ ?

ମାଧବୀ

ସତରେ କେମିତି ଆସିଲ ?

ବୀରଭଦ୍ର

ତମ ଚଠି ପାଇ ମୁଁ ବିସ୍ମିତ ହୋଇ ପଡ଼ିଲି । ସତରେ ମାଧବୀ ! ତମେ ଏକଟି ଏଇ ଅଂଧାର ଘରେ ଏମିତି ଦୟନୀୟ ଅବସ୍ଥାରେ ଅଛ ବୋଲି ଭାବିଲେ ମୁଁ ହତାଶ ହୁଏ—

ମାଧବୀ

ଖାଲି ସେତିକି ନୁହେଁ । ମୁଁ ଏଇ କେତେ ଦିନ ହେଲା ଦେଖିଛି ସେ ଗେରୁଆ ଲୁଗା ପିଂଧିବା ଆରଂଭ କରିଛଂତି ।

ବୀରଭଦ୍ର

(ବିସ୍ମିତ ହୋଇ) ଇଂଟେରିବଲ୍ । ଇଏତ ଭଲ ଲକ୍ଷଣ ନୁହେଁ !

ମାଧବୀ

ତାଂକ ପାଖରେ ସବୁ ସମ୍ଭବ ଝିଅ ଭାଇ ! ଖାଲି ସେତିକି ନୁହେଁ । ଗୋଟାଏ କୋଦଂଡାଂକ ଫୋଟୀ ଆଉ କାଁଚା ପଚା ଦାଢ଼ି ମଧ୍ୟ ରଖିଛଂତି ମତେ ଲୁଚାଇ...ଲୁଚାଇ...

ବୀରଭଦ୍ର

(ଉତ୍ତେଜିତ) ମାଧବୀ ! ଏ ତମେ କଣ କହୁଛ ? ନିଶ୍ଚୟ ସିଏ ବାବାଜୀ ହୋଇଯିବେ— ତମ ଜୀବନ ନଷ୍ଟ ହୋଇ ଯାଇପାରେ...

ମାଧବୀ

(କଂଠରେ ଆର୍ଦ୍ରତା) ମୁଁ ବଡ଼ ହତଭାଗିନୀ ବଡ଼ ଭାଇ ! ବାହା ହେବାର ଏଇ ଏତେ ବର୍ଷ ଭିତରେ ମୋ' କୋଳରେ ସେ ସନ୍ତାନଟିଏ ଦେଇ ପାରିଲେନି...ମତେ ଟିକିଏ ମାତୃତ୍ୱ ଦେଇ ପାରିଲେନି...

॥ ସତାଅଶି ॥

ବୀରଭଦ୍ର

(ଦୀର୍ଘଶ୍ୱାସ) ମୁଁ ଲଜ୍ଜିତ ତଥାପି ସମୟ ଅଛି···ତମେ ମୋ' ସାଂଗରେ ଆସ ମାଧବୀ···ଆମେ ସେଇ ସମୁଦ୍ରକୂଳକୁ ଚାଲି ଯିବା···

ମାଧବୀ

ଏଁର ଯାଇ !

ବୀରଭଦ୍ର

ଆସ ମାଧବୀ···ଜାଣି ଜାଣି ଜୀବନକୁ ଏମିତ ନଷ୍ଟ କରନା !

ମାଧବୀ

ଛି···ମତେ ଛୁଅଁ ନା···

ବୀରଭଦ୍ର

ନାଁ, ମୁଁ ଆଜି ତୁମର କୌଣସି କଥା ଶୁଣିବିନି । ଆସ···

ମାଧବୀ

ଏଁର ଯାଇ !

ବୀରଭଦ୍ର

ଆକାଶ ଆଉ ସମୁଦ୍ର ଦେଖିବା ଆସ ମାଧବୀ ! ଏଇଠି ଏଇ ଅଂଧାର ଘରେ ବଣମଲ୍ଲୀ ଭଳି ଝରିବାରେ କଛି ମାନେ ନାହିଁ···

ମାଧବୀ

ତଥାପି ମୁଁ···

ବୀରଭଦ୍ର

ମାଧବୀ !!

[ ଠିକ୍ ମାଧବୀକୁ ସ୍ପର୍ଶ କଲାବେଳେ ଶୋଇବା ଘର ଭିତରୁ ଡେଇଁ ଉଠିଛନ୍ତି କୃଷ୍ଣମୋହନ । ବଜ୍ର ଗଂଭୀର ସ୍ୱରରେ ]

॥ ଅଠାଅଶି ॥

କୃଷ୍ଣମୋହନ

କଣ ହଉଚ ସେଇଠି ?

ମାଧବୀ

ଇସ୍ ତମେ ଡେଇଁଲ କାହିଁକ ? ଜଣେ ବୈଜ୍ଞାନିକ ହୋଇ···

ବୀରଭଦ୍ର

ଆପଣଂକ ପାଟି ଶୁଣି ମୋ' ଗୋଡରୁ ମୁଂଡ ଯାଏଁ କୋଲ ମାରିଗଲା ।

କୃଷ୍ଣମୋହନ

ଗୋଡ଼ ? ତମ ଗୋଡ଼ କୋଲ ମାରିଗଲେ ମୋର କଣ ଗଲା ? ତମେ ମୋର ସ୍ତ୍ରୀକୁ···

ବୀରଭଦ୍ର

ହଁ କୁହଂତୁ କଥା ଗୁଡା ଏମିତି ଗିଳି ପକାଉଛଂତି କାହିଁକ ?

କୃଷ୍ଣମୋହନ

(ସାହସର ସହିତ) ହଁ । ତମେ ମୋର ସ୍ତ୍ରୀକୁ···ଭଦ୍ର ଭାଷାରେ କହିବାକୁ ଗଲେ "ସ୍ପର୍ଶ" କରୁଥିଲ । କଣ ମିଛ ?

ବୀରଭଦ୍ର

କଂଣୁ ଏମିତି ସିଧା ସିଧା ଏଇ କଥାଟା କହିବା ଆଦୌ ଉଚିତ ହେଉନ—ବୋଧହୁଏ ମୁଁ କରୁନଥିଲ ।

କୃଷ୍ଣମୋହନ

ବୋଧହୁଏ ନୁହେଁ; ନିଶ୍ଚିତ ଭାବରେ ତମେ ମୋର ସ୍ତ୍ରୀଂକୁ "ସ୍ପର୍ଶ" କରୁଥିଲ । ମୁଁ ଭାତ ଖାଉଥିଲା ବେଳେ ତମେ···ଅର୍ଥାତ୍ ମୋର ଧ୍ୱୀର ବେଆଇନ ଭାଇ···ବୀରଭଦ୍ର ମିଶ୍ର···ମୋର ସ୍ତ୍ରୀକୁ ଏଇ ଲାବୋରଟାରୀରେ ସ୍ପର୍ଶ କଲ ।

ବୀରଭଦ୍ର

ଦେଖଂତୁ ଏଇଟା ମଣିଷର ଦୁର୍ବଳତା । ଏମିତି ବେଳେ ବେଳେ ହୋଇ ଯାଇପାରେ । ମୁଁ କ୍ଷମା ମାଗି ନେଉଚି ।

॥ ଅଣନବେ ॥

କୃଷ୍ଣମୋହନ

ପ୍ଲିଜ୍ ଦୟାକରି ମୋତେ କ୍ଷମା ମାଗଂନ୍ତୁ ନାହିଁ । କ୍ଷମା ଦେବା ଏକ ଭଲ କାମ ନୁହେ । ମୁଁ ଦେଇ ପାରିବିନି ।

ବୀରଭଦ୍ର

ମୁଁ ବୁଝୁଛି···ଆପଣ କଣ ଭାବୁଛଂନ୍ତି ଆପଣଂକର ହୃଦୟଟା କେମିତି ବରଫ ଭଳି ତରଳି ଯାଉଚି ମୁଁ ବୁଝୁଛି···

କୃଷ୍ଣମୋହନ

ଥରେ ମାଧବୀ ଏମିତି ଖରାବେଳେ ଗୋଟାଏ ମଟର ଗ୍ୟାରେଜରେ ବୋହୂ ବୋହୂକା ଖେଳ ସମ୍ପର୍କରେ କହୁଥିଲା···ପେଟ୍ରୋଲ ଗଂଧ ···ଡିଜେଲ୍···କଂହୁ ତା' ଠାରୁ ଉତମ ଅନ୍ତର ଜଗନ୍ୟ···

ବୀରଭଦ୍ର

ନା । ପେଟ୍ରୋଲ୍ ମୁଁ ଶୁଂଘେନି ନା । ମୋତେ ଟିକିଏ ଖୋଲା ଆକାଶ ଦିଅଂନ୍ତୁ···ଟିକିଏ ସମୁଦ୍ର ଦିଅଂନ୍ତୁ···

କୃଷ୍ଣମୋହନ

ମୁଁ ବେଂଗ ଗବେଷକ । ଅଧ୍ୟାପକ କୃଷ୍ଣମୋହନ ମହାପାତ୍ର । ମୁଁ ଏସବୁ ବୁଝିପାରୁନି ।

ବୀରଭଦ୍ର

ଆପଣ ସବୁ ବୁଝୁଛଂନ୍ତି···ନ ବୁଝିବାର ଛଳନା କରୁଛଂନ୍ତି ।

କୃଷ୍ଣମୋହନ

(ହଠାତ୍ ଭାଂଗିଯାଇ) ବର୍ତ୍ତମାନ ମୁଁ ଖାଇଲା ବେଳେ ଭାବୁଥିଲି ଏ ଗବେଷଣା ସମ୍ପର୍କରେ । ମୋର ବ୍ୟର୍ଥତା ସମ୍ପର୍କରେ । ତେଣୁ ହେ ମୋର···ସ୍ତ୍ରୀଂକର ଭାଇ—ଏବଂ—ପ୍ରେମିକ !! ମୁଁ ବର୍ତ୍ତମାନ ଚାଲିଯାଉଛି ଘର ଛାଡି···ଉତମେ ବରଂ...

ବୀରଭଦ୍ର

କୁଆଡେ ଯିବ ?

॥ ନବେ ॥

କୃଷ୍ଣମୋହନ

ମୁଁ ଗିବ ସେଇ ଶୋଷଣ କଳକୁ···ଯୋଉଠୁ ମୁଁ ଏଇ ଏଗାର ବର୍ଷ ଭିତରେ ପାଂଚ ହଜାର ବେଂଗ ଧରି ଆଣିଛି ଏବଂ ସେମାନଂକୁ ଏଇ ଲାବୋରଟୋରୀରେ ହତ୍ୟା କରିଛି···

ବୀରଭଦ୍ର

ପ୍ଲିଜ୍ !! ଆପଣ ଯାହା କରୁଂଛ ପଛେ ମୋ ଆଗରେ ନିଜ ଦୁର୍ବଳତା ପ୍ରକାଶ କରଂନ୍ତୁନ ।

କୃଷ୍ଣମୋହନ

ମୁଁ ତମର ଏଇ ଅବସ୍ଥା ଦେଖିଲା ପରେ ଆଜ ଆତ୍ମହତ୍ୟା କରିବି ।

ବୀରଭଦ୍ର

କିଂଛୁ ଏଥିପାଇଁ ଦାୟୀ ତମେ ନିଜେ । ତମେ ତମର ସ୍ତ୍ରୀକୁ ମୋ' ପାଖକୁ ଛୁଡ ଦେଇନ ।

କୃଷ୍ଣମୋହନ

ମୁଁ ଛୁଡ ଦେଇଚ ? ମାନେ ? ତମେ କଣ କହିବାକୁ ଚାହୁଁଛ ?

ବୀରଭଦ୍ର

ନିଶ୍ଚୟ । ବାହା ହେଇ ବାର ବର୍ଷ ପରେ ତମେ ସନ୍ନ୍ୟାସୀ ହେବ, ଧଳା ଦାଢ଼ି, ଗେରୁଆ ଲୁଗା, କୋଦଂଡ଼ାଂକ ଚୋପି ପିନ୍ଧିଂବ ପ୍ଲାର କରିଛ ମାନେ ଅଛି ? କୌଣସି ସୁସ୍ଥ ଲୋକ ଏମିତି କରି ପାରେନା ।

କୃଷ୍ଣମୋହନ

ଓଃ ତା' ହେଲେ ମାଧବୀ ଦେଖିଛ ଏ ସବୁ ? ଏବଂ ତମକୁ କହିଛି !! କିଂଛୁ ତମେ ଆମ ଭିତରେ ଆସି ସାଳିସ୍ କଲାବାଲା କିଏ ?

ବୀରଭଦ୍ର

ମୁଁ ତାର "ଖାର ଭାଇ" ।

॥ ଏକୋନଚଢେ ॥

କୃଷ୍ଣମୋହନ

ତମେ ମୋ' ମଣ୍ଡୂକ ପରିବାରରେ କୃଷ୍ଣସର୍ପ ।

ବୀରଭଦ୍ର

ଅର୍ଥାତ୍...?

କୃଷ୍ଣମୋହନ

ମଣ୍ଡୂକ-କୃଷ୍ଣ-ସର୍ପ କଥା ଶୁଣିଛ ?

ବୀରଭଦ୍ର

ମୁଁ ନିଜେ ଏକ କାହାଣୀ ।

କୃଷ୍ଣମୋହନ

ଗଙ୍ଗଦତ୍ତ ନାମକ ବେଙ୍ଗ ଥିଲା । ଗୋଟିଏ ଗଭୀର କୂପ ଥିଲା ତାର ନିବାସ ସ୍ଥଳ ଏବଂ ସେଇଠି ତାର ଅନେକ ସ୍ୱଜନ ଥିଲେ ।

ବୀରଭଦ୍ର

ମୁଁ ଆପଣଙ୍କ କାହାଣୀ ଶୁଣିବାକୁ ଚାହେଁନା ।

କୃଷ୍ଣମୋହନ

(ଭ୍ରୂକ୍ଷେପ ନକରି) ସେ ସ୍ୱଜନମାନଙ୍କ ଦ୍ୱାରା ପ୍ରପୀଡ଼ିତ ହୋଇ ଏକ କୃଷ୍ଣସର୍ପର ବିଳ ପାଖରେ ପହଂଚିଲା ଏବଂ ତାକୁ ବନ୍ଧୁ କରି ଆଣି ସେଇ କୂପ ମଧ୍ୟରେ ଆଶ୍ରୟ ଦେଲା । ବନ୍ଧୁ କୃଷ୍ଣସର୍ପ ପ୍ରତିଦିନ ଗୋଟିଏ ଗୋଟିଏ ଆତ୍ମୀୟ ସ୍ୱଜନଙ୍କୁ ନିଜ ଭକ୍ଷଣ ରୂପେ ବ୍ୟବହାର କରିସାରିଲା ପରେ ଗଙ୍ଗଦତ୍ତର ପତ୍ନୀ ଏବଂ ସନ୍ତାନମାନେ ମଧ୍ୟ ତାର ଆହାର ହେଲେ । ତେଣୁ ଗଙ୍ଗଦତ୍ତ ପ୍ରମାଦ ଗଣିଲା ଏବଂ ଭାବିଲା ବୁଭୁକ୍ଷିତ ଏବଂ କ୍ଷୀଣ ଜନମାନେ ନିଷ୍କରୁଣ । ତେଣୁ ନିଜ ଜୀବନ ବଞ୍ଚାଇ କୌଶଳକ୍ରମେ ଗଙ୍ଗଦତ୍ତ ସେଇ ଗଭୀର କୂପ ଛାଡ଼ି ଦୂରକୁ ...ଅତି ଦୂରକୁ ପଳାଇଗଲା ।

॥ ଯବନିକା ॥

ବୀରଭଦ୍ର

ଆପଣ କଣ କହିବାକୁ ଚାହାଁନ୍ତି ?

କୃଷ୍ଣମୋହନ

ସବୁ କହିସାରିଛି । ତମେ ମାଧବୀକୁ ନେଇ ରୁହ । ମୁଁ ଚାଲିଲି ।

ବୀରଭଦ୍ର

ତମେ ଯିବ ? (ହସିଲେ) ତମର ପକ୍ଷ ଛିଣ୍ଡି ଯାଇଛି । ସେଇଥି ପାଇଁ ତମେ ଏଗାର ବର୍ଷ ହେଲା ଏଇ କୂପ ଭିତରେ ଅଛ । ତମେ କ୍ଲୀବ···ତମେ ଅଥର୍ବ···ସେଇଥିପାଇଁ ଆକାଶ, ସମୁଦ୍ର ଆଉ ଅରଣ୍ୟ ଦେଖିବାକୁ ତମେ ଅଯୋଗ୍ୟ !!

କୃଷ୍ଣମୋହନ

ବୀରଭଦ୍ର !!

ବୀରଭଦ୍ର

ମୋ' ଉପରେ ଏମିତି ଚିତ୍କାର କରି ତମେ ନିଜକୁ ଦୁର୍ବଳ କରନା ବୈଜ୍ଞାନିକ ! ମୁଁ ଏକ ଭ୍ରାମ୍ୟମାଣ ଅରଣ୍ୟ···ପାହାଡ ପାହାଡ ରହସ୍ୟ ନେଇ ମୁଁ ଏମିତି ଚାଲିଯାଏ···ଏମିତି···ଠିକ୍ ଏମିତି ମୋ' ପଛରେ ରହିଯାଏ ଅନେକ ସବୁଜ ପତ୍ର···ଅନେକ ମର୍ମର ···ଅନେକ ବସନ୍ତର ଗୁଞ୍ଜନ···ଏବଂ···ଏବଂ···ଏବଂ···ତମ ଭଳି ଅନେକ ଝାଂଗର ଭୂଇଁ ।

[ ଚାଲିଗଲେ ]

କୃଷ୍ଣମୋହନ

(ବଡ ପାଟିରେ) ବୀରଭଦ୍ର !···ଅରଣ୍ୟ !! ସମୁଦ୍ର !!!

ମାଧବୀ

କୁଆଡେ ଯାଉଛ ?

କୃଷ୍ଣମୋହନ

ମତେ କହୁଛ ?

॥ ଚେଷ୍ଟାନବେ ॥

ମାଧବୀ

ହଁ ।

କୃଷ୍ଣମୋହନ

ମୁଁ ଏଇ କ୍ଷୁଦ୍ର ପୃଥିବୀକୁ ପରିତ୍ୟାଗ କରିବି । ଏବଂ…

ମାଧବୀ

ଏବଂ… ?

କୃଷ୍ଣମୋହନ

ଏବଂ…ମୁଁ…

ମାଧବୀ

ତମେ… ? କଣ ହବ ?

କୃଷ୍ଣମୋହନ

ମୁଁ…ମାନେ…ତମେ ଜାଣିଛ ମାଧବୀ…ଏଇ ଅରଣ୍ୟ ଗୁଳିଗଲା ପରେ ମୋର ମନେ ହେଉଛି ମୁଁ ସତରେ ଏକ ଝାଂଗର ଭୂଇଁ ଏବଂ ଏଇଠି ମୁଁ ଖାଲି ଏଗାର ବର୍ଷ ହେଲା ମଶାଣି ଖୋଜୁଥିଲି ।

ମାଧବୀ

ବର୍ତ୍ତମାନ ତା' ହେଲେ ମଶାଣି ଖୋଜିବା ପାଇଁ ଯାଉଛ ?

କୃଷ୍ଣମୋହନ

ମୁଁ ତମ ଆଗରେ ଆଜି ଗୋଟାଏ କଥା ସ୍ୱୀକାର କରିବା ପାଇଁ ଚାହୁଁଛି ।

ମାଧବୀ

କଣ ?

କୃଷ୍ଣମୋହନ

ତା' ପୂର୍ବରୁ କୁହ ମୋର ଏଇ ଗବେଷଣା ତମକୁ ସତରେ ଭଲ ଲାଗୁଥିଲା ?

॥ ଚଉରାନବେ ॥

ମାଧବୀ

ଏଗାର ବର୍ଷ ତମ ସାଂଗରେ କଟେଇଛି । ଏଇଟା ତାର ପ୍ରମାଣ ।

କୃଷ୍ଣମୋହନ

ବେଶ୍ ତା' ହେଲେ ମୁଁ ଯାଉଛି ।

ମାଧବୀ

ତମେ ଯାଇ ପାରିବନି ।

କୃଷ୍ଣମୋହନ

(ଆଗେଇଲେ) ମୁଁ ଯିବି ।

ମାଧବୀ

ନା ସେ ଦୁଆର ଖୋଲିବନି ।

କୃଷ୍ଣମୋହନ

(ଦୁଆର ଖୋଲିବା ପାଇଁ ଚେଷ୍ଟା କରି) ମୁଁ ଯିବି ।

ମାଧବୀ

(ହସି ହସି) ତମେ ଯାଇ ପାରିବନି !!

କୃଷ୍ଣମୋହନ

(କବାଟ ଖୋଲିବା ପାଇଁ ଚେଷ୍ଟା କରି···ନ ପାରି) ମୁଁ ଯିବି···
କିଂତୁ ଏ ଦୁଆରଟା ଖୋଲୁନି କାହିଁକି ?

ମାଧବୀ

ତମେ ଖୋଲି ପାରିବନି । ତମର ସବୁ ଶକ୍ତି ବେଗ କାଟି କାଟି ଶେଷ ହୋଇଯାଇଛି ।

କୃଷ୍ଣମୋହନ

ଏ ଦୁଆରଟା ଖୋଲୁନି କାହିଁକି ? ତମେ ମ୍ୟାଜିକ୍ କରିଚ ?

ମାଧବୀ

ତମେ କ୍ଲାଂତ···ଟିକିଏ ଶୋଇବ ଆସ ।

॥ ଯଂଷ୍କନବେ ॥

କୃଷ୍ଣମୋହନ

ମୁଁ ଆଉ ଦୁଇ ମିନଟ୍ ରହିଲେ ଶ୍ୱାସରୁଦ୍ଧ ହୋଇ ମରିଯିବି ।

ମାଧବୀ

ଆସ । ମୁଁ ତମକୁ ଭିଟାମିନ୍‌କ୍ସ ଖୁଆଇ ଦେବି ।

କୃଷ୍ଣମୋହନ

ମୁଁ ସମୁଦ୍ର ଭିତରେ ମିଶିଯିବାକୁ ଚାହେଁ— ।

ମାଧବୀ

ଏଇ ଦେଖ ଆକାଶ କେତେ ସୁନ୍ଦର···ଏଇଠି ଅନେକ ସ୍ୱପ୍ନ··· ଅନେକ···ରଙ୍ଗ···

କୃଷ୍ଣମୋହନ

ମୁଁ ଘର ଭାଇକୁ ଧରିବି । ସେ ମୋର ଗୁରୁ ।

ମାଧବୀ

ଏଇ ଦେଖ ସନ୍ଧ୍ୟା ଆକାଶ ଉପରକୁ ଆମର ଶୂନ୍ୟତା ସବୁ ପକ୍ଷୀ ହୋଇ ଉଡ଼ି ଯାଉଛନ୍ତି ।

କୃଷ୍ଣମୋହନ

ଓଃ !! ଏ କବାଟ ଖୋଲୁନି କାହିଁକି ? ମୁଁ ବାହାରକୁ ଯିବି···

ମାଧବୀ

ଦେଖ···ଅକାଶର ତାରାମାନେ ଅନୁରାଗର ଲୁହ ଝରାଉଛନ୍ତି···ଏ ଆକାଶ କେତେ ସୁନ୍ଦର···

କୃଷ୍ଣମୋହନ

ମୁଁ କ୍ଳାନ୍ତ !! ଓଃ···ମତେ କାହିଁକି ଏତେ ହାଲୁକା ଲାଗୁଛି ।

॥ ଛପ୍ନାନବେ ॥

ମାଧବୀ

ଆସ, ଏଇ ଚଂପାଫୁଲ ମହକରେ ଭାସି ଭାସି ଉଡ଼ିଯିବା ଅନେକ ଦୂରକୁ···

କୃଷ୍ଣମୋହନ

ମୁଁ ଉଡ଼ିବାକୁ ଚାହେଁ···ମତେ ଉଡ଼ିବାକୁ ଦିଅ···

ମାଧବୀ

ଅମୃତ ସମାନ ଆହା ଅଟେ ସେଇ ଘର !

କୃଷ୍ଣମୋହନ

ମତେ କ୍ଷମା କର ମାଧବୀ !! ବେଂଗମାନେ ମତେ ଠକି ଦେଲେ ।

ମାଧବୀ

ଅକାଶ ହିଁ ସମୁଦ୍ର । ସମୁଦ୍ର ହିଁ ଆକାଶ ।

କୃଷ୍ଣମୋହନ

ମୋ' ଗେରୁଆ ଲୁଗା, ଟୋପି ଓ ଦାଢ଼ି ମତେ ଠକି ଦେଲେ ।

ମାଧବୀ

ଅସ ଅମେ ଏଇ ଗୋଧୂଳିର ରଂଗ ଭିତରେ ବାଟ ଖୋଜିବା !

କୃଷ୍ଣମୋହନ

ସମସ୍ତେ ବଦ୍‌ମାସ୍ । ସମସ୍ତେ ଧୋକା ଦେଲେ ।

ମାଧବୀ

ଆମେ ଯଦି ପରସ୍ପରଂକୁ ଭଲ ପାଇପାରଂତେ···

କୃଷ୍ଣମୋହନ

ମତେ ବିଶ୍ୱାସ କର ମାଧବୀ···ମୁଁ ଭଲ ପାଇବାକୁ ଚାହେଁ···ପ୍ରେମ, ଶାଂନ୍ତି, ମୈତ୍ରୀରେ ମୋର ବିଶ୍ୱାସ ଅଛି । (ଆବିଷ୍କାର କଲଭଳି) ତମେ ଜାଣ ମାଧବୀ ? ପ୍ରେମ ଆଉ ସ୍ନେହ କୁଆଡେ ସବୁ ବିଶୃଂଖଳା ସଜାଡି ଦିଏ ।

॥ ସତାନବେ ॥

ମାଧବୀ

ଚାଲ ଆମେ ସେଇ ଆକାଶ ଭିତରେ ଅରଣ୍ୟର ଠିକଣା ଖୋଜିବା ଅରଣ୍ୟ ଭିତରେ ସମୁଦ୍ରର ଢେଉ ଗଣିବା ।

କୃଷ୍ଣମୋହନ

କିଂଚୁ ମୋର ସେଇ ନଦିଆ ଖୋଳଟା ?

ମାଧବୀ

ନଦିଆ ଖୋଳ ?

କୃଷ୍ଣମୋହନ

ସେଇଟା ମୁଁ ଲୁଚେଇ ରଖିଛି ମୋ' ଆଲମାରୀ ପଛପଟେ ।

ମାଧବୀ

ଥାଉ । ସେଟା କ'ଣ ହବ ?

କୃଷ୍ଣମୋହନ

ଆମେ କୀର୍ତ୍ତନ କରିବା ।

ହରେ କୃଷ୍ଣ ହରେ କୃଷ୍ଣ, ରାମ ରାମ ହରେ ହରେ
ହରେ କୃଷ୍ଣ ହରେ କୃଷ୍ଣ, ରାମ ରାମ ହରେ ହରେ···

ମାଧବୀ

ଦେଖ···ପ୍ଲିଜ୍···ମୋ' ସୁନାଟା ପରା···ତମେ ସେ ଖୋଳଟା ଆଣନ···ତାକୁ ମୁଁ କାଲି ସକାଳୁ ଗୋପାଳଜୀଉ ମନ୍ଦିରରେ ଦେଇ ଆସିବି···ହେଇ···ଶୁଣୁଚ···କହ୍ନାଇ ପରା ଯାଅନ ସେ ଘରକୁ···!! ଓଃ···କେଡ଼େ ଅମାନିଆ ପିଲାଟେ ମ'···

କୃଷ୍ଣମୋହନ

(ଘର ଭିତରେ ଖୋଳ ବଜେଇ ଗାଇଲେ)

ହରେ କୃଷ୍ଣ ହରେ କୃଷ୍ଣ, ରାମ ରାମ ହରେ ହରେ
ହରେ କୃଷ୍ଣ ହରେ କୃଷ୍ଣ, ରାମ ରାମ ହରେ ହରେ···

॥ ଅଠାନବେ ॥

ମାଧବୀ

ମୋ' ସୁନାଟା ପରା···ଦୁଷ୍ଟ ହୁଅନା···

କୃଷ୍ଣମୋହନ

ହରେ କୃଷ୍ଣ ହରେ କୃଷ୍ଣ, ରାମ ରାମ ହରେ ହରେ
ହରେ କୃଷ୍ଣ ହରେ କୃଷ୍ଣ, ରାମ ରାମ ହରେ ହରେ···

ମାଧବୀ

କ'ଣ ଘର କଷ୍ଟ ହେଉଚି ?

କୃଷ୍ଣମୋହନ

ହରେ କୃଷ୍ଣ···ହରେ ରାମ···

ମାଧବୀ

ଆସ ମୁଁ ଭିଟାଭେକ୍‌ସ୍ ଛୁଆଇ ଦେବି···

କୃଷ୍ଣମୋହନ

ହରେ କୃଷ୍ଣ···ହରେ ରାମ

ମାଧବୀ

(ବ୍ୟସ୍ତ ହୋଇ) ଓଃ ! କହୁଚି ପରା ଆସ···ଏମିତି ଠିଆ ହୋଇ ରହିଲ କାହିଁକି···? ଆସ··· ।

କୃଷ୍ଣମୋହନ

ହରେ କୃଷ୍ଣ···ହରେ ରାମ···

ମାଧବୀ

ଆସ···ଏଇ ସଂଧ୍ୟାର ଆକାଶ ଭିତରେ ଆମେ ନୂଆ କରି ମଧୁଚନ୍ଦ୍ରିକା ପାଳନ କରିବା ମଧୁଚନ୍ଦ୍ରିକା (ସ୍ୱପ୍ନ ନେଇ)··· ଆକାଶ···ସମୁଦ୍ର···ଶାମୁକା···ମାଳକଇଁ···

କୃଷ୍ଣମୋହନ

(ଶ୍ୱାସରୁଦ୍ଧ ହେଲା ଭଳି) ରାମ ରାମ ହରେ ହରେ ।

॥ ଅବନେଷ୍ଟକ ॥

### ମାଧବୀ

ପ୍ରତିଦିନ ନିୟମିତ ଭାବେ ତମେ ଗବେଷଣା କରିବ···ପ୍ରତିଦିନ ସୂର୍ଯ୍ୟ ସହିତ ଆକାଶରେ ଆମେ ଖେଳିବା···ପ୍ରତିଦିନ ସମୁଦ୍ରର ଢେଉରେ ନିୟମିତ ଭାବେ ଆମେ ଶାମୁକା ଖୋଜିବା···ପ୍ରତିଦିନ ରାତିରେ ଆମେ ମଧୁଚଂଦ୍ରିକା ପାଳନ କରିବା···

### କୃଷ୍ଣମୋହନ

( ଅହୁରି କଷ୍ଟକରେ···ଟିକେ ଆଉ ପାଟିରୁ ବାହାରି ପାରୁନି )
ରାମ···ରାମ···

### ମାଧବୀ

ଓଃ···ତମେ ଏମିତି ଆକାଶ ସହିତ ମିଶିଯାଉଚ କାହିଁକି ? ପ୍ଲିଜ୍ ·· ତମେ ଆସ···ତମେ ଦୁର୍ବଳ ହୋଇଗଲଣି···ମୁଁ ବରଂ ତୁମକୁ ଶୁଆଇ ଦେଇଚ...କୋକ ବାପୁ ଗୀତ ଗାଇବ ?

### କୃଷ୍ଣମୋହନ

(ଫୁସ୍ ଫୁସ୍ ହୋଇ) ରାମ···

### ମାଧବୀ

(ଗାଇବା ଆରଂଭ କଲେ) ଉଁ·· ଉଁ···ଉଁ

### କୃଷ୍ଣମୋହନ

ରାମ···

[ ତମେ କୋକ ବାପୁ ଗୀତ ସହିତ
କୃଷ୍ଣମୋହନଂକ 'ରାମ' ଢେଉର ଏକ
ରସାପ୍ଲୁତ ସୃଷ୍ଟି ହୋଇଛି ଆବଦ୍ଧ
ସଂଗୀତ ଭିତରେ ।

ଏହି ଶାବ୍ଦିକ ଅନୁଭୂତିକୁ
ଅନେକ ସମୟ ପର୍ଯ୍ୟନ୍ତ ବଢ଼େଇ
ଦିଆଯାଇପାରେ—ସେତିକି ସମୟ

॥ ଶେଷ ॥

ପର୍ଯ୍ୟନ୍ତ…ଯେତେବେଳେ ଦର୍ଶକଙ୍କ ଓ ଅଭିନେତା/ନେତ୍ରୀଙ୍କ ମନ ଅଭିଭୂତ ହୋଇପଡ଼ିବ । ଏଇଠି ନାଟକର ସମାପ୍ତି ଘଟିପାରେ କି ନାହିଁ ତାହା ମଧ୍ୟ ବିଚାର୍ଯ୍ୟ । କିନ୍ତୁ କୌଣସି ଅନୁଭୂତିର ଆରମ୍ଭ ଓ ଶେଷ ନିର୍ଣ୍ଣୟ କରିବା ସୃଜନଶୀଳ କଳାକାର ପାଖରେ ଦୁରୂହ ବ୍ୟାପାର । କାରଣ ଅନୁଭୂତି ସମ୍ବନ୍ଧରେ 'ନିର୍ଣ୍ଣୟ' କଲାଭଳି ବୌଦ୍ଧିକତା ମୋ' ମତରେ ଏକ ଅବାନ୍ତର ପ୍ରଶ୍ନ । କିନ୍ତୁ 'ହରେ କୃଷ୍ଣ ହରେ ରାମ' ମନ୍ତ୍ର ଭିତରେ ଏକ ପୂର୍ଣ୍ଣାନୁଭୂତି ଅନ୍ତର୍ନିହିତ ।

ଦ୍ଵିତୀୟ ପ୍ରଶ୍ନ ହେଲା : ନାଟକର ଚରିତ୍ର ସଂଖ୍ୟା ଏତିକିରେ ସୀମିତ କି ?

ମୋ'ର ଉତ୍ତର ହେଲା—ନା, ଆଃ କୃଷ୍ଣମୋହନଙ୍କ ଗବେଷଣା ପରିପ୍ରେକ୍ଷୀରେ ଯେଉଁମାନଙ୍କର କଥା (ସଂଳାପ) ସ୍ପଷ୍ଟତର ସେମାନଙ୍କୁ ନେଇ, ଅର୍ଥାତ୍ ସେମାନଙ୍କ କଥାକୁ ନେଇ ଏଇ ନାଟକ ମୁଦ୍ରିତ କରାଯାଉଛି । କିନ୍ତୁ ସେଇଠି ଉପସ୍ଥିତ ମଣିଷ-ମାନଙ୍କର ଅଭାବ ନାହିଁ । ମୁଁ ଜାଣେ ତାଙ୍କ ଘରେ ଜଣେ ଚାକର ଅଛି ଯେ କଥା କହିବାର ଆବଶ୍ୟକତା ପୂରଣ କରିପାରେନା । ସମ୍ଭବତଃ ମୂକ । କୃଷ୍ଣମୋହନଙ୍କ ଜୀବନ ଓ ଗବେଷଣାର ପ୍ରତି ଅମୀମାଂସିତ ଅବସ୍ଥାରେ ସେ ସେଠାରେ ପହଂଚଯାଏ (ଆଃ ! କି ନାଟକୀୟ !!) । ପୁଣି ଦିନେ ଏମିତି ମଧ୍ୟ ଦେଖାଯାଇଛି—କୃଷ୍ଣମୋହନଙ୍କୁ

॥ ଶବ୍ଦେ ଏକ ॥

ବେଂଗ ଯୋଗାଇବା ପାଇଁ ଜଣେ ନିକୃଷ୍ଟ ଶ୍ରେଣୀର ଲୋକ ମଧ୍ୟ ସେଠାକୁ ଆସିଛନ୍ତି ଏବଂ ତା' ସାଂଗରେ ତାର ଏକ ଅପରିଚ୍ଛନ୍ନ ସଂତାନ (ପୁଅ ବା କନ୍ୟା ଜଣାଯାଉନାହିଁ) ମଧ୍ୟ । ମାଧବୀ ତାକୁ ଦେଖି ଏକ ଅଭିବ୍ୟକ୍ତି-ଊର୍ଦ୍ଧ୍ୱ ଅନୁଭୂତି ଦ୍ୱାରା ଆଚ୍ଛନ୍ନ ହୁଅଂତି ।

ଉପରୋକ୍ତ ଜୀବନ୍ତ ମୁହୂର୍ତ୍ତଗୁଡ଼ିକୁ ମୋର ଅତି ଆଦରର ଦର୍ଶକମାନଂକ ଆଗରେ କିପରି ଅଭିବ୍ୟକ୍ତ (Communicable) କରିପାରିବ ତାହା ମୋର ନାଟ୍ୟ—ଅଭିନେତା/ନେତ୍ରୀ ଓ ନିର୍ଦ୍ଦେଶକଂକ ଦାୟିତ୍ୱ !

ଶ୍ରୀରାମ ନଗର
ପାତ୍ର କଲୋନୀ, ବ୍ରହ୍ମପୁର-୨
୫ ୭-୧୯୭୮

॥ ଶେଷ ହୁଇ ॥